# ଉତ୍କଳ କେଶରୀ

ସଂପାଦନା

ଡାଃ ଶ୍ୟାମ ସୁନ୍ଦର ଦାସ

ଗୁରୁକଲ୍ୟାଣ ମହାପାତ୍ର

ଡକ୍ଟର ଶ୍ରୀଚରଣ ମହାନ୍ତି

ଉତ୍କଳ କେଶରୀ ସ୍ମୃତି ସଂସଦ
ସି-୨୨୮, କୋଏଲ୍ ନଗର, ରାଉରକେଲା-୧୪
ଫୋନ୍ ନମ୍ବର-୫୪୨୪୫୦

ଉତ୍କଳ କେଶରୀ
ସଂପାଦନା :
ଡାଃ. ଶ୍ୟାମସୁନ୍ଦର ଦାସ
ଗୁରୁକଲ୍ୟାଣ ମହାପାତ୍ର,
ଡଃ. ଶ୍ରୀଚରଣ ମହାନ୍ତି
ପ୍ରକାଶକ :
ଉତ୍କଳ କେଶରୀ ସ୍ମୃତି ସଂସଦ,
ରାଉରକେଲା
ପ୍ରକାଶ :
ଏପ୍ରିଲ୍ ୧୯୯୬
ମୁଦ୍ରକ :
ଡଗର ପ୍ରେସ୍,
ୟୁନିଟ୍-୩, ଭୁବନେଶ୍ୱର
ପ୍ରଚ୍ଛଦ :
ମହାଭାବ ପ୍ରକାଶ
ମୂଲ୍ୟ - ୫୫ ଟଙ୍କା

Utkal Keshari
**Edited by :**
Dr. Shyamsundar Das,
Gurukalyana Mohapatra,
Dr. Sricharan Mohanty
**Publisher :**
Utkal Keshari Smruti Sansad,
Rourkela
**Publication :**
April 1996
**Printer :**
Dagara Press,
Unit-3, BBSR
**Cover Disign :**
Mahabhav Prakash
Price - Rs. 55.00

## ଉତ୍କଳ କେଶରୀ ସ୍ମୃତି ସଂସଦ ରାଉରକେଲାର କର୍ମକର୍ତ୍ତାବୃନ୍ଦ

**ପୃଷ୍ଠପୋଷକ :**
ଶ୍ରୀ ପ୍ରଭାତ ମହାପାତ୍ର, ବିଧାୟକ, ରାଉରକେଲା
**ସଭାପତି :**
ଶ୍ରୀ ଗୁଣମଣି ମହାପାତ୍ର, (ଚାର୍ଟାର୍ଡ ଆକାଉଣ୍ଟେଣ୍ଟ)
**ଉପ ସଭାପତି :**
ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର, ସହ-ସଂପାଦକ,
ପ୍ରଜାତନ୍ତ୍ର, (ରାଉରକେଲା)
ଶ୍ରୀ ରବି କାନୁନଗୋ, (ବିଶିଷ୍ଟ ଲେଖକ)
**ସାଧାରଣ ସଂପାଦକ :**
ଡାଃ. ଶ୍ୟାମସୁନ୍ଦର ଦାସ,
ଅତିରିକ୍ତ ସ୍ୱାସ୍ଥ୍ୟ ଅଧିକାରୀ,
ରାଉରକେଲା ମ୍ୟୁନିସିପାଲିଟି
**ଯୁଗ୍ମ ସଂପାଦକ :**
ଶ୍ରୀ ପୂର୍ଣ୍ଣଚନ୍ଦ୍ର ପରିଡା
ଅଧ୍ୟାପକ ବିଷ୍ଣୁଚରଣ ରାଉତ
ଶ୍ରୀ ଏସ୍.କେ. ଦାସ
**କୋଷାଧ୍ୟକ୍ଷ :**
ଶ୍ରୀ ଅମରେନ୍ଦ୍ର ପ୍ରଧାନ

# ସୂଚିପତ୍ର

# ସଂପାଦକୀୟ

ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବ ଭାରତମାତାର ଅନ୍ୟତମ ବରପୁତ୍ର ହୋଇଥିଲେ ମଧ୍ୟ ଜାତୀୟ ସ୍ତରରେ ସେ ଯେପରି ମର୍ଯ୍ୟାଦା ଓ ସମ୍ମାନ ପାଇବା କଥା ତାହା ପାଇପାରିନାହାନ୍ତି। ଏଥିପାଇଁ ଭାରତୀୟ ନେତାମାନଙ୍କର ଅସୂୟା ତଥା ହେୟ ମନୋଭାବ ଏବଂ ଆମ ଓଡ଼ିଆ ମାନଙ୍କର ହୀନମନ୍ୟତା ଓ ନିଷ୍କ୍ରିୟତା ସମ୍ଭବତଃ ଦାୟୀ।

ପ୍ରାକ୍ ସ୍ୱାଧୀନତା କାଳର ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିକୁ ସର୍ବକନିଷ୍ଠ ସଦସ୍ୟ ଭାବେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଦ୍ୱାରା ମନୋନୀତ ହୋଇ କାଳକ୍ରମେ ସ୍ୱାଧୀନ ଭାରତର ପ୍ରଥମ ମନ୍ତ୍ରିପରିଷଦରେ ଶିଳ୍ପ ଓ ବାଣିଜ୍ୟ ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ପାହ୍ୟା ହାସଲ କରିଥିବା ତଥା ଅବିଭକ୍ତ ବମ୍ବେ ଭଳି ରାଜ୍ୟର ରାଜ୍ୟପାଳ ପଦବୀ ମଣ୍ଡନ କରିଥିବା ଏବଂ ସର୍ବୋପରି ଭାରତୀୟ ସାହିତ୍ୟ ଓ ଇତିହାସ ସୃଷ୍ଟିରେ ନିଜର ଦକ୍ଷତା ପ୍ରତିପାଦନ କରିଥିବା ବହୁମୁଖୀ ପ୍ରତିଭାଧାରୀ ସେଇ ଉତ୍କଳ କେଶରୀ ଅନ୍ୟ ନେତାମାନଙ୍କ ପରି ଜାତୀୟ ସ୍ତରରେ ପ୍ରତିଷ୍ଠିତ ହୋଇ ନ ପାରିବା ଆମ୍ଭମାନଙ୍କ ପାଇଁ ଯେପରି ବିସ୍ମୟକର ଭବିଷ୍ୟତର ବଂଶଧରମାନଙ୍କ ପାଇଁ ସେପରି ଗବେଷଣାର ବିଷୟବସ୍ତୁ ମଧ୍ୟ।

ସେଇ ଦିବଂଗତ ସଫଳ ରାଷ୍ଟ୍ରନୀତିଜ୍ଞ ଯେ କି ପଶ୍ଚିମ ଓଡିଶାରେ ହୀରାକୁଦ ଡ୍ୟାମ୍‌ଠାରୁ ଆରମ୍ଭ କରି ରାଉରକେଲାର ବୃହତ୍ ଲୌହ ଶିଳ୍ପାୟନ ପର୍ଯ୍ୟନ୍ତ ଯାବତୀୟ ସ୍ୱପ୍ନକୁ ସାକାର କରିଥିଲେ ତାଙ୍କରି ଅମର ଆତ୍ମାକୁ ସମ୍ମାନ ଜଣାଇ ଶିଳ୍ପନଗରୀ ରାଉରକେଲାଠାରେ ନବଗଠିତ, "ଉତ୍କଳ କେଶରୀ ସ୍ମୃତି ସଂସଦ" ଆନୁକୂଲ୍ୟରେ ଏହି ସ୍ମରଣିକା ପ୍ରକାଶନ ଲାଗି ସାମାନ୍ୟମାତ୍ର ଉଦ୍ୟମ କରିଛୁ। ଓଡିଶାର ଅଗଣିତ ପାଠକ ପାଠିକା, ଲେଖକ, ଶ୍ରମିକ, ଶିଳ୍ପୀ, ବୁଦ୍ଧିଜୀବି, ସାଧାରଣ ନାଗରିକ ତଥା ଛାତ୍ରଛାତ୍ରୀଙ୍କ ନିଟକରେ ଏହି ସ୍ମରଣିକାଟି ନିଶ୍ଚିତ ଭାବେ ଏକ ଉପାଦେୟ ଗ୍ରନ୍ଥ ଭାବରେ ସଂରକ୍ଷିତ ହୋଇ ରହିବ ବୋଲି ଆମ୍ଭମାନଙ୍କର ଆଶା ଓ ବିଶ୍ୱାସ।

ଏହି ସ୍ମରଣିକା ପ୍ରକାଶନ ଲାଗି ଯେଉଁ ଶୁଭେଚ୍ଛୁମାନେ ଆକୁଣ୍ଠିତ ଚିତ୍ତରେ ଆମକୁ ସାହାଯ୍ୟ ସହଯୋଗ କରି ଏପରି ଏକ ଦୁରୂହ କାର୍ଯ୍ୟଲାଗି ଆମକୁ ପ୍ରେରଣା ଦେଇଛନ୍ତି ସେମାନଙ୍କ ନିକଟରେ ଆମେ କୃତଜ୍ଞତା ଜ୍ଞାପନ କରୁଛୁ।

ରାଉଲକେଲା
ବିଷୁବ ସଂକ୍ରାନ୍ତି

ଡଃ ଶ୍ୟାମ ସୁନ୍ଦର ଦାସ
ଗୁରୁକଲ୍ୟାଣ ମହାପାତ୍ର
ଡଃ ଶ୍ରୀଚରଣ ମହାନ୍ତି

**From Dr. Mahtab's Pen.......**

# PROFESSION OF JOURNALISM IN ORISSA

**Dr. Harekrushna Mahtab**

Orissa is virtually a rural State; the coastal districts being the suburbs of the industrial city of Calcutta and the outlying districts in the West and the South being the suburbs of the industrial cities of Bihar, Madhya Pradesh and Andhra; the inland districts being almost completely cut off from the industrial and commercial centres due to lack of adequate communication. From this geographical description of the State, its economic poisition can well be imagined. The Press in 'Parliamentary Democracy' depends on a solid middle class which maintains it on the economic structure it builds up. This middle class is virtually nonexistent in Orissa because the State is not industrially developed and there is no internal adequate communication for commerical purposes. Therefore, the newspapers in Orissa depend on the industrial and commercial institutions of Calcutta, Bombay, Madras and Delhi for advertisements which form the main source of revenue for the newspapers. The consuming population of Orissa is so constituted that about half of it are outside the reach of newspapers because of its backwardness in the matter of modern civilisation. The remaining half, too, are not educationally as advanced as the people in the neighbouring States. Neverthless, with this section of the population the newspapers are concerned for their revenue on account of subscription and sale. That too depends on the economic and educational standard of this class of people.

I mention all these factors which are overlooked when comparison is made between Orissa and other States on an all India level not only with regard to the profession of journalism but to other professions as well. The scope of journalism as a profession is for the above reasons limited in Orissa. Even then newspapers have to be run as they are now a part of the life of the society. All the limitations of the economic and social conditions have to be overcome. In fact, they are being overcome by those who are on the field. But it is gradually becoming difficult to overcome the difficulties created by political considerations of the ruling authorities.

For the newspapers in Orissa, government advertisements are the main sources of income. The papers which do not toe to the line of the government of the day do not receive the same treatment as those which support the government. Here the paper is between the devil and the deep sea. If it supports directly

or indirectly unpopular policies and measures of government, it loses subscribers and its sale comes down if it is critical of government, it loses government advertisements. This is a problem which has to be considered not only by the management but by the working journalists as well. Advantages which are available to small and medium newspapers in other States, are denied here in Orissa. Advance of money at concessional rates of interest to newspapers to lift their quotas of newsprint by the Small Industries Corporation is an advantage which is available in many States but that is denied here in Orissa as a result of which the newspapers have to pay heavy interest to the financiers to lift their quotas of newsprint. Recently the Press Registrar has suggested to the Orissa Small Industries Corporation to allow the same advantage to the newspapers which is allowed elsewhere. It is hoped the Orissa Government will not introduce political consideration in this commercial matter.

It is rather unusual on the part of a journalist to place the difficulties of the management before the working journalists when they meet to discuss their problems. But believe me, I am a journalist for all-purposes. I fully realise the hardship and the difficulties of those who are employed by the newspapers of the state. But I think the time has come when the working journalists should take up the problems of the management which are created by the government on political considerations. From this point of view a working journalist has to be politically minded also. Today in the changed circumstances, a newspaper has to be ultimately a political organisation either in favour of or critical of the establishment. The working journalists have therefore to be commuted to one conviction or the other. How nice it would have been if there had been scope for independent journalism in democratic India. But unfortunately the leadership today does not allow any newspaper to be independent. Either it goes wholehog with the government or it is an enemy of them, this is the attitude of the rulers today. This being the position, the papers which hold independent views and are critical of the government find themselves in a very difficult position. In the circumstances the support of the working journalists is essential for the growth of free and fair journalism. If newspapers are to be treated as a power to reckon with, then the working journalists have to be politically conscious in discharging their duties. This is my humble submission for consideration of the working journalists of Orissa. With regard to their difficulties in the profession, they should be examined and considered in the light of the circumstances prevailing in the State.

(1986)

# କନିକା ପ୍ରଜା-ଆନ୍ଦୋଳନରେ ମହତାବଙ୍କ ଭୂମିକା

ଗୟାଧର ବାରିକ

୧୯୨୧ ମସିହାରେ ଆରମ୍ଭ ହୋଇଥିବା କନିକା ପ୍ରଜା ଆନ୍ଦୋଳନ ୧୯୫୨ରେ ଶେଷ ହେଲା। କନିକା ରାଜା ନିଜ ରାଜକୋଷକୁ ବଢ଼ାଇବା ପାଇଁ ଅନ୍ୟାୟ ଭାବରେ ୬୪ ପ୍ରକାର ବେଆଇନ କର ବସାଇଥିଲେ। ପ୍ରଜାମାନଙ୍କ ଉପରେ ରାଜା ଚଳାଇ ଥିବା ଅତ୍ୟାଚାର ଅକଥନୀୟ ହେଲେ ବି ସୁଦ୍ଧା, ଏହାର ପ୍ରତିବାଦ କରିବା ପାଇଁ ସାହସ କାହାର ନଥିଲା। କଂଗ୍ରେସପ୍ରେମୀ ବ୍ୟକ୍ତିମାନେ ଦୁଃସାହସୀ ହୋଇ ଏପରି ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଉଦ୍ୟମ କରୁଥିବାବେଳେ କଂଗ୍ରେସ ଆନ୍ଦୋଳନକୁ କନିକାରୁ ମୂଳପୋଛ କରିବା ପାଇଁ ରାଜା ପ୍ରତିଜ୍ଞାବଦ୍ଧ ହେଲେ। ବ୍ରିଟିଶ ସରକାର ରାଜାଙ୍କୁ ଏପରି ପଦକ୍ଷେପରେ ସାହାଯ୍ୟ କଲେ। ନିରସ୍ତ୍ର ଜନତାଙ୍କ ଉପରେ ଲୋମହର୍ଷଣକାରୀ ଗୁଳିକାଣ୍ଡ ଆରମ୍ଭ ହେଲା। ଦୁଇଜଣ ପ୍ରାଣ ହରାଇଲେ ଓ ୧୪୪ ଜଣ ଆହତ ହେଲେ। ଶହ ଶହ ବିଦ୍ରୋହୀ ପ୍ରଜାଙ୍କୁ ଗିରଫ କରାଗଲା। ପ୍ରଜାମାନଙ୍କ ଧନସମ୍ପତ୍ତି ଲୁଟତରାଜ, ନାରୀମାନଙ୍କ ଉପରେ ବଳାତ୍କାର ଓ ପାଶବିକ ଅତ୍ୟାଚାର ଚାଲିଲା। ପ୍ରଜାମାନେ ଭୟଭୀତ ହୋଇ ଘରଦ୍ୱାର ଛାଡ଼ି ବଣଜଙ୍ଗଲକୁ ପଳାଇବା ଆରମ୍ଭ କଲେ। କନିକା ପ୍ରଜାମାନଙ୍କ ଏହି ଦୁର୍ଦ୍ଦିନରେ ଅନ୍ୟାୟ, ଅତ୍ୟାଚାର ଓ ଅବିଚାର କବଳରୁ ମୁକ୍ତି ପାଇଁ ଡକ୍ଟର ମହତାବ ଥିଲେ ଏକ ଅମ୍ଳାନ ଜ୍ୟୋତିଷ୍କ।

ସେତେବେଳେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ସେ ନିଜ ଗ୍ରାମ ଆଗରପଡ଼ାରେ "କର୍ମମନ୍ଦିର" ଓ ବାଲେଶ୍ୱରରେ "ସ୍ୱରାଜମନ୍ଦିର" ପ୍ରତିଷ୍ଠା କରି ଅସହଯୋଗର ବାର୍ତ୍ତା ବାଲେଶ୍ୱର ଜିଲ୍ଲାର ଗ୍ରାମେ ଗ୍ରାମେ ପ୍ରଚାର କରି କଂଗ୍ରେସ ପାଇଁ ପାଣ୍ଠି ସଂଗ୍ରହ କାର୍ଯ୍ୟରେ ଦିନରାତି ଲିପ୍ତ ଥାଆନ୍ତି ଓ କଂଗ୍ରେସ ପାଇଁ ସମଗ୍ର ବାଲେଶ୍ୱର ଜିଲ୍ଲାରେ କର୍ମୀ ସଂଗ୍ରହ କରୁଥାଆନ୍ତି। ଗ୍ରାମେ ଗ୍ରାମେ ସୂତାକଟା କେନ୍ଦ୍ର, ବିଦେଶୀ ବସ୍ତ୍ର ବର୍ଜନ ଆନ୍ଦୋଳନ, ନିଶା- ନିବାରଣ ଅଭିଯାନ ଚଳାଇଥାନ୍ତି। ଭଦ୍ରକ ହାଇସ୍କୁଲରେ ମହତାବଙ୍କ

ସହପାଠୀ ଥିବା ଚକ୍ରଧର ବେହେରା କଣ୍ଟାପଡାରେ କଂଗ୍ରେସ ସଭାରେ ସହଯୋଗ କରିଥିବାରୁ ରାଜାଙ୍କର କୋପଦୃଷ୍ଟିରେ ପଡ଼ି ଚାକିରି ଛାଡ଼ି ନିଷ୍ଠୁର ମାଡ଼ଖାଇ ପାଞ୍ଚମୂକା ଅଞ୍ଚଳରେ ମହତାବଙ୍କର ସହଯୋଗକ୍ରମେ କଂଗ୍ରେସବାର୍ତ୍ତା ପ୍ରଚାର କରି ରାଜବିରୋଧୀ ଆନ୍ଦୋଳନକୁ ଗ୍ରାମେ ଗ୍ରାମେ ସଂପ୍ରସାରଣ କରିବା କାର୍ଯ୍ୟରେ ଲାଗିଥାନ୍ତି। କଂଗ୍ରେସ କର୍ମୀ ସଂଖ୍ୟା ବଢ଼ାଇ କଂଗ୍ରେସ ସଂଗଠନକୁ ମଜଭୁତ କରିବା ପାଇଁ ଉଦ୍ୟମ ଚଳାଇଥାନ୍ତି। ଏହି କାର୍ଯ୍ୟରେ ଡଃ ମହତାବ ଥାଆନ୍ତି ଚକ୍ରଧର ବେହେରାଙ୍କ ପ୍ରେରଣାର ଉତ୍ସ। ଅସହଯୋଗ ଆନ୍ଦୋଳନକୁ ଦବାଇ ଦେବା ପାଇଁ କନିକା ରାଜା ଯେଉଁ ଅପଚେଷ୍ଟା ଚଳାଇଥିଲେ, ମହତାବବାବୁ ସେ ସମ୍ପର୍କରେ ଇଂରାଜୀ ଭାଷାରେ ପ୍ରଚାରପତ୍ର ଛପାଇ ବାଣ୍ଟିଥିଲେ। ତହିଁରେ ସେ ଉଲ୍ଲେଖ କରିଥିଲେ-

" The Kanika Sarkar thinks that he will obstruct the waves of the Non Co-operation movement by streching out his hand. But be it remembered that the awakening of the people caused by the Non-Co-operation movement will lower the head not only of the Kanika Sarkar but also of the Delhi Sarkar... Now we are awakened. Let the faint light of the wakening be kept up in our hearts. Eventually it will spread like wild fire, grow furious and serve as a guide to many countries"

ଏହି ପ୍ରଚାରପତ୍ର ବଣ୍ଟାଯିବା ପରେ ମହତାବଙ୍କୁ ଗିରଫ କରାଯାଇ ପ୍ରଥମେ ବାଲେଶ୍ୱର ଜେଲରେ ରଖାଯାଇ ପରେ କଟକ ଜେଲକୁ ସ୍ଥାନାନ୍ତର କରାଯାଇ କନିକା ରାଜାଙ୍କ ପ୍ରଚେଷ୍ଟାରେ ବିହାରର ହଜାରୀବାଗ୍ ଜେଲକୁ ପଠାଯାଇଥିଲା। ଜେଲରେ ତାଙ୍କୁ ମାଡ଼ ଦିଆଯିବା ସଙ୍ଗେ ସଙ୍ଗେ କଠିନ ଶ୍ରମ ଜେଲଦଣ୍ଡ ଭୋଗ କରିବାକୁ ପଡ଼ିଥିବା ବିଷୟ ମହତାବ ତାଙ୍କ 'ସାଧନାର ପଥେ' ଆତ୍ମଜୀବନୀ ପୁସ୍ତକରେ ଲେଖିଛନ୍ତି।

ମହତାବ ହଜାରୀବାଗ ଜେଲରେ ସଶ୍ରମ କାରାଦଣ୍ଡ ଭୋଗକଲେ। ଏହି ଜେଲ ଦଣ୍ଡ ତାଙ୍କ ଜୀବନର ପ୍ରଥମ କାରାଦଣ୍ଡ। ମହତାବ ହଜାରୀବାଗ ଜେଲକୁ ଚାଲିଯିବାପରେ କନିକା ରାଜାଙ୍କର କୋପଦୃଷ୍ଟି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଉପରେ ପଡ଼ିଲା। ଛମୂକାର ଗୁଳିକାଣ୍ଡ ଓ ଦମନଲୀଳା ସମ୍ପର୍କରେ

ପଣ୍ଡିତ ଗୋପବନ୍ଧୁ "ସମାଜ" ସମ୍ବାଦପତ୍ରରେ ସମ୍ବାଦ ପ୍ରକାଶ କରିଥିବାରୁ ତାଙ୍କ ବିରୁଦ୍ଧରେ କନିକାରାଜା ମାନହାନି ଅଭିଯୋଗ କରିବାରୁ, ସରକାର ଗୋପବନ୍ଧୁ ଦାସଙ୍କୁ ଦଣ୍ଡିତ କରି ହଜାରୀବାଗ ଜେଲକୁ ପଠାଇଦେଲେ। ମହତାବ ହଜାରୀବାଗ ଜେଲରୁ ମୁକ୍ତ ହେବା ପରେ କନିକାକୁ ଆସି ଚକ୍ରଧର ବେହେରାଙ୍କ ସହ ମିଶି କନିକା ରାଜାଙ୍କର ବର୍ଦ୍ଧିତ ଖଜଣା ହାର ବିରୁଦ୍ଧରେ ଆନ୍ଦୋଳନ କଲେ। ସେ କନିକାରେ ସରକାରୀ ବନ୍ଦୋବସ୍ତ ପ୍ରଚଳନ କରାଇବା ପାଇଁ ପ୍ରଜାମାନଙ୍କ ତରଫରୁ ସରକାରଙ୍କଠାରେ ଦାବୀ ଜଣାଇବାରେ ସହାୟକ ହେଲେ। ଏଥି ସହିତ କନିକାରେ ସୂତାକଟା, ଲୁଗାବୁଣା କାର୍ଯ୍ୟକ୍ରମ, ଛୁଆଁଅଛୁଆଁ ଭେଦଭାବ ବିରୁଦ୍ଧରେ ହରିଜନ ଆନ୍ଦୋଳନ, କଂଗ୍ରେସ ଦଳ ପାଇଁ ପାଣ୍ଠି ସଂଗ୍ରହ କାର୍ଯ୍ୟ କରି ମହତାବ କନିକାର ଘରେ ଘରେ ପରିଚିତ ହୋଇଗଲେ। ମହତାବଙ୍କ ଦ୍ୱାରା ପ୍ରକାଶିତ "ପ୍ରଜାତନ୍ତ୍ର" (ସେ ସମୟରେ ବାଲେଶ୍ୱରରୁ ପ୍ରକାଶିତ) ସମ୍ବାଦପତ୍ରରେ କନିକା ଅଞ୍ଚଳର ସମସ୍ତ ଖବର ଛପାଇବା ଦ୍ୱାରା କନିକା ରାଜାଙ୍କର ସମସ୍ତ ଅପକର୍ମ ସାରା ଓଡ଼ିଶାର ଲୋକେ ଜାଣିବାକୁ ପାଇଲେ। ୧୯୨୫ ମସିହାରେ ଲକ୍ଷ୍ନୌଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ମହତାବ କନିକାରେ ଚାଲିଥିବା ତାଣ୍ଡବଲୀଳା ବିଷୟ ଉତ୍ଥାପନ କରିବା ସଙ୍ଗେ ସଙ୍ଗେ ଉକ୍ତ ଅଧିବେଶନର ସଭାପତି ପଣ୍ଡିତ ମଦନ ମୋହନ ମାଲବ୍ୟ ନିଜେ ଆସି କନିକା ପରିସ୍ଥିତି ଅନୁଧ୍ୟାନ କରିବା ପାଇଁ ଅନୁରୋଧ ଜଣାଇଥିଲେ। ଫଳରେ କନିକା ସମସ୍ୟା ଏକ ଭାରତୀୟ ସମସ୍ୟା ବୋଲି ମହାତ୍ମାଗାନ୍ଧୀଙ୍କ ସମେତ ସମସ୍ତ ଜାତୀୟ ନେତାମାନେ ଅନୁଭବ କଲେ। ଏହାପରେ ମହାତ୍ମାଗାନ୍ଧୀ "ହରିଜନ" ଓ 'Young India' ପତ୍ରିକାରେ କନିକା ଅତ୍ୟାଚାର ବିଷୟ ଲେଖି ସାରା ଭାରତର ଜନସାଧାରଣଙ୍କୁ କନିକା ପ୍ରଜା ଆନ୍ଦୋଳନ ପ୍ରତି ଆକୃଷ୍ଟ କରାଇଲେ। ନିଜେ ମହାତ୍ମାଗାନ୍ଧୀ ୧୯୨୭ ମସିହାରେ କନିକା ଆସି ପ୍ରଜାମାନଙ୍କର ଦୁଃଖଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦେଖିଗଲେ।

ଏହା ଫଳରେ ଗୁଜୁରାଟରେ ସର୍ଦ୍ଦାର ପଟେଲଙ୍କ ପରିଚାଳିତ "ବର୍ଦ୍ଦୋଲୀର କୃଷକ ଆନ୍ଦୋଳନ", ବିହାରରେ ରାଜେନ୍ଦ୍ର ପ୍ରସାଦଙ୍କ ନେତୃତ୍ୱରେ ପରିଚାଳିତ "ଚମ୍ପାରଣ କୃଷକ ଆନ୍ଦୋଳନ" ଭଳି ମହତାବ ଓ ଚକ୍ରଧର ବେହେରାଙ୍କ ନେତୃତ୍ୱରେ ପରିଚାଳିତ 'କନିକା ପ୍ରଜା ଆନ୍ଦୋଳନ' ଏକ ଜାତୀୟ କୃଷକ ଆନ୍ଦୋଳନର ରୂପ ନେଇ ପାରିଲା। ଏହା କେବଳ ମହତାବଙ୍କ ଯୋଗୁ ସମ୍ଭବପର ହୋଇପାରିଥିଲା। ଡକ୍ଟର ମହତାବ ତାଙ୍କ "ଦଶବର୍ଷର ଓଡ଼ିଶା"

ଓ ଆତ୍ମଜୀବନୀ ''ସାଧନାର ପଥେ'' ପୁସ୍ତକରେ କନିକା ଇତିହାସର କରୁଣ କାହାଣୀକୁ ବିଶେଷ ଭାବରେ ବର୍ଣ୍ଣନା କରିଛନ୍ତି। ତାଙ୍କ ବିରୁଦ୍ଧରେ କନିକାରାଜା ଛିଡ଼ା କରାଇଥିବା ପ୍ରାର୍ଥୀଙ୍କୁ ହରାଇ ମହତାବ ବାଲେଶ୍ୱର ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ ହୋଇ ପାରିଥିଲେ। ତାଙ୍କ ଜିଲ୍ଲା ବୋର୍ଡ଼ କାର୍ଯ୍ୟକାଳ ମଧ୍ୟରେ କନିକାର ପ୍ରଜା ନେତା ଚକ୍ରଧର ବେହେରାଙ୍କୁ ବାଲେଶ୍ୱର ଜିଲ୍ଲା ବୋର୍ଡ଼ର ମନୋନୀତ ସଭ୍ୟ କରାଇ, କନିକାର ପାଞ୍ଚମୁଠା ଇଲାକାରେ ଅନେକ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା ଓ ପାନୀୟ ଜଳର ଅଭାବ ଦୂର କରାଇବା ପାଇଁ ବହୁ ସଂଖ୍ୟକ ପୋଖରୀ ଖୋଳାଇ ମହତାବ ଜନପ୍ରିୟ ହୋଇ ପାରିଥିଲେ।

୧୯୩୭ ମସିହାରେ ଓଡ଼ିଶାରେ ପ୍ରଥମ କରି ବିଧାନସଭା ନିର୍ବାଚନ ହେଲା। ଭଦ୍ରକ ସବ୍‌ଡିଭିଜନ ପୂର୍ବ ଭଦ୍ରକ ଓ ପଶ୍ଚିମ ଭଦ୍ରକ ଏପରି ଦୁଇଟି ନିର୍ବାଚନମଣ୍ଡଳୀରେ ବିଭକ୍ତ ହୋଇଥିଲା। କଂଗ୍ରେସ ଦଳ ବିରୁଦ୍ଧରେ କନିକା ରାଜା ଓଡ଼ିଶାରେ ନେତୃତ୍ୱ ନେଇ ମୋଟ ୬୦ ଗୋଟି ନିର୍ବାଚନ ମଣ୍ଡଳୀରେ ତାଙ୍କ ମନୋନୀତ ପ୍ରାର୍ଥୀଙ୍କୁ କଂଗ୍ରେସ ଦଳ ପ୍ରାର୍ଥୀଙ୍କ ବିରୁଦ୍ଧରେ ଛିଡା କରାଇଥିଲେ। ପୂର୍ବ ଭଦ୍ରକ ନିର୍ବାଚନମଣ୍ଡଳୀରେ ମହତାବ ଚକ୍ରଧର ବେହେରାଙ୍କୁ ପ୍ରାର୍ଥୀ କରାଇ କନିକା ରାଜପୁତ୍ର ଶିରିଶ ଚନ୍ଦ୍ର ରାୟଙ୍କୁ ପରାସ୍ତ କରିଥିଲେ। ମହତାବ ନିଜେ ବିଭିନ୍ନ ସ୍ଥାନରେ ନିର୍ବାଚନ ସଭାମାନ କରି ଚକ୍ରଧର ବାବୁଙ୍କ ସପକ୍ଷରେ ଭାଷଣ ଦେଇଥିଲେ। ଚକ୍ରଧର ବାବୁ ୧୯୩୭ରେ ବିଧାନସଭାକୁ ନିର୍ବାଚିତ ହେବା ପରେ ବିଶ୍ୱନାଥ ଦାଶଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ କନିକାରୁ ୬୪ ପ୍ରକାର ବେଆଇନ କର, ବେଠି ବେଗାରୀ କଂଗ୍ରେସ ସରକାରଙ୍କ ପ୍ରଣୀତ ଆଇନ ଦ୍ୱାରା ଦୂର ହେଲା। ପ୍ରଜାମାନେ ରାଜାଙ୍କର ଅତ୍ୟାଚାରରୁ ମୁକ୍ତି ପାଇଲେ। ଚକ୍ରଧର ବାବୁ ୧୯୫୨ ମସିହା ନିର୍ବାଚନରେ କଂଗ୍ରେସ ଦଳର ପ୍ରାର୍ଥୀ ଭାବେ କନିକା ରାଜାଙ୍କ ପ୍ରାର୍ଥୀ ରବିନାରାୟଣ ଜେନାଙ୍କୁ ଚାନ୍ଦବାଲି-ବାସୁଦେବପୁର ନିର୍ବାଚନମଣ୍ଡଳୀରେ ପରାସ୍ତ କରି ବିଧାନସଭାକୁ ନିର୍ବାଚିତ ହେବା ପରେ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ୧୯୫୨ ମସିହାରେ ଓଡ଼ିଶାରୁ ସବୁଦିନ ପାଇଁ ଜମିଦାରୀ ଉଚ୍ଛେଦ ହେଲା। କନିକା ପ୍ରଜା ଆନ୍ଦୋଳନର ଶେଷ ଯବନିକା ପଡ଼ିଲା। କନିକା ପ୍ରଜା ଆନ୍ଦୋଳନରେ ଡକ୍ଟର ମହତାବଙ୍କ ଭୂମିକା ଓ ତ୍ୟାଗ ପାଇଁ ସେ କନିକା ପ୍ରଜାଙ୍କର ଚିର ନମସ୍ୟ ହୋଇ ରହିଛନ୍ତି। ଚକ୍ରଧର ବାବୁ ୧୯୩୦ ମସିହାରେ ଚୌକିଦାରୀ ଅଡ଼ିନାନ୍ସ ଭଙ୍ଗ କରିଥିବା ମିଥ୍ୟା ଅଭିଯୋଗରେ କନିକାରାଜାଙ୍କ ଷଡ଼ଯନ୍ତ୍ରକ୍ରମେ

ଗିରଫ ହୋଇ ବାଲେଶ୍ୱର ଜେଲରେ ବନ୍ଦୀ ଜୀବନ କଟାଉଥିବା ବେଳେ ତାଙ୍କ ଲିଖିତ " ବନ୍ଦୀର ବିଳାପ" କବିତା ପୁସ୍ତକରେ ମହତାବଙ୍କ ପ୍ରତି କୃତଜ୍ଞତା ଜଣାଇ ଲେଖିଛନ୍ତି-

"ରାଜବଂଶୋଦ୍ଭବ ମହତାବ ଭାଇ,
ଏ ଜନ୍ମେ ତୋ ଗୁଣ ପାଶୋରିବି ନାହିଁ।
ବୁଝିଥିଲୁ ଏକା କନିକା କଷଣ,
ତା' ଲାଗି ପ୍ରଥମେ ତୋ କାରାବରଣ।"

୧୯୭୩ ମସିହାର ପ୍ରଥମ ଦିବସରେ କନିକାର ପ୍ରଜାନେତା ଚକ୍ରଧର ବାବୁଙ୍କ ବିୟୋଗରେ ଡକ୍ଟର ମହତାବ ବ୍ୟଥିତ ହୋଇ 'ପ୍ରଜାତନ୍ତ୍ର'ରେ ଲେଖିଥିଲେ-

"ସ୍ୱାଧୀନତା ପୂର୍ବଯୁଗରେ ଦେଶରେ ଯେତେ ଆନ୍ଦୋଳନ ହୋଇଥିଲା, ସେଥିଭିତରେ କନିକା ଆନ୍ଦୋଳନ ପ୍ରାୟ ପନ୍ଦର ବର୍ଷ କାଳ (୧୯୨୨ ରୁ ୧୯୩୭) ମୁଖ୍ୟ ହୋଇ ରହିଥିଲା। ଏହି ଆନ୍ଦୋଳନ କଟକ ଜିଲ୍ଲା ଅନ୍ତର୍ଗତ ଛମୁକାରେ ଆରମ୍ଭ ହୋଇଥିଲେ ମଧ୍ୟ ଏହାକୁ ଅବଶେଷରେ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ପାଞ୍ଚମୁକାରେ ଶ୍ରୀ ଚକ୍ରଧର ବେହେରା ନିଜର ପରିଚାଳନା କୌଶଳରେ ଯଶସ୍ୱୀ କରିଥିଲେ। ସେ ସମୟରେ ସେ ଐତିହାସିକ ଆନ୍ଦୋଳନର ପୂର୍ଣ୍ଣ ବିବରଣୀ ଏକାଠି କାହାରି ଦ୍ୱାରା ପ୍ରକାଶିତ ହୋଇନାହିଁ। କାଳକ୍ରମେ ତାହା ହେବ। ସେହି ଆନ୍ଦୋଳନରେ ଚକ୍ରଧର ଓ ତାଙ୍କର ସହକର୍ମୀମାନେ ଯେ ନିର୍ଯ୍ୟାତନା ଓ ଲାଞ୍ଛନା ବର୍ଷ ବର୍ଷ କାଳ ଭୋଗିଛନ୍ତି, ତାହା ଆଜି କୌଣସି ଆନ୍ଦୋଳନ କରିବାକୁ ମନବଳାଉଥିବା ଯୁବକ ଜାଣିବା ଉଚିତ। ଚକ୍ରଧରଙ୍କ ମୃତ୍ୟୁରେ ଏକ ଯୁଗର ଅବସାନ ଘଟିଲା। ନୂତନ ଯୁଗର ନୂତନ ପ୍ରେରଣା ନେଇ ଚକ୍ରଧର ଯେଉଁ ଜନଜାଗରଣର ସୂତ୍ରପାତ କରିଥିଲେ, ତାହା ପରିପୂର୍ଣ୍ଣ ହେଉ"।

କନିକା ପ୍ରଜା ଆନ୍ଦୋଳନକୁ ସକ୍ରିୟ ଓ ସଫଳ କରିବା ଦିଗରେ ଡଃ ମହତାବ ଯେଉଁ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ, ତାହା ଅବିସ୍ମରଣୀୟ।



# କେତେକ ଅନ୍ତରଙ୍ଗ ମୁହୂର୍ତ୍ତ...

ଅଳକା ଚାନ୍ଦ

ଅନେକ ସମୟରେ ଜୀବନକୁ ଆମେ ସ୍ୱପ୍ନର ସିଂହାସନରେ ବସେଇ ଭୁଲିଯାଉ ଯେ, ଏ ସିଂହାସନ ଦିନେ ଭୁଷୁଡ଼ି ପଡ଼ିବ; ସୂର୍ଯ୍ୟର ଛୁଆଁରେ, ଫେରିଯିବ ତା'ର ଆପଣାର ଇଲାକାକୁ, ସିଂହାସନ ଭୁଷୁଡ଼ି ପଡ଼ିବ। ଜୀବନକୁ ଫାଙ୍କିଦେଇ, ବିପୁଳ ବ୍ୟଙ୍ଗ ବିଦ୍ରୂପ ସହିତ ନିର୍ମମ କଠୋର ଭାବେ ଠିଆ ହେବ ମୃତ୍ୟୁ। ସେମିତି ଆସିଥିଲା ଏକ ନିର୍ମମ ସକାଳ- ଜାନୁୟାରୀ ୨, ୧୯୮୭ ମସିହା- ମୋ ମା ସେଦିନ ହଠାତ୍ ଅସୁସ୍ଥ ହେଇ ପଡ଼ିଥିବାରୁ ମୁଁ ସେଦିନ ରାଉରକେଲା ଫେରି ପାରି ନଥାଏ ଓ ଭୁବନେଶ୍ୱରରୁ ଗାଁକୁ ଫେରିଥାଏ। ଫେରିବା ବାଟରେ ମୁଁ କୌଣସି ଏକ ବ୍ୟକ୍ତିଙ୍କର ଟେଲିଫୋନରେ ଅତ୍ୟନ୍ତ ମର୍ମାହତ ମଧ୍ୟ ହୋଇ ପଡ଼ିଥାଏ। କାରଣ ସବୁଦିନ ପରି, ମୁଁ କଟକ ବା ଭୁବନେଶ୍ୱର ଆସିଲେ ଡକ୍ଟର ମହତାବଙ୍କୁ ଟେଲିଫୋନ ବାରି ତାଙ୍କ ସହିତ ସାକ୍ଷାତ କରିବାର ସମୟ ପଚାରିଥାଏ, କିନ୍ତୁ ସେଇଥରକ ଆଉ ତାଙ୍କ କଣ୍ଠସ୍ୱର ମୋତେ ମିଳିଲା ନାହିଁ। ଏଇଟା ଡିସେମ୍ବର ୨୬ କି ୨୭ତାରିଖ ୮୬ ମସିହା ହେବ- ଡକ୍ଟର ମହତାବ ସେତେବେଳେକୁ ପ୍ରାୟ ଶଯ୍ୟା ଧରିଲେଣି। ଡାକ୍ତରମାନଙ୍କ ନିର୍ଦ୍ଦେଶକ୍ରମେ ସାଧାରଣ ଲୋକମାନଙ୍କ ସହିତ ତାଙ୍କର ସାକ୍ଷାତକାର ସେତେବେଳକୁ ବାତିଲ୍ କରି ଦିଆଯାଇଥାଏ।

ଡକ୍ଟର ମହତାବ ଥିଲେ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ, ଭଦ୍ରକ କଲେଜର ପ୍ରାଣପ୍ରତିଷ୍ଠାତା ଓ ଓଡ଼ିଶାର ବିଶିଷ୍ଟ ଆଇନ୍‌ଜୀବୀ, ମୋ ଅଜା ସ୍ୱର୍ଗତ ନରେନ୍ଦ୍ର ପ୍ରସାଦ ଦାସଙ୍କର ଅନ୍ତରଙ୍ଗ ବନ୍ଧୁ। ସେଇ ହିସାବରେ ଭିତ୍ତିଭୂମି ଉପରେ ମୁଁ ଅଧ୍ୟୁଷିତ ହୋଇ ତାଙ୍କ ନିକଟକୁ ବାରମ୍ବାର ଯାଇଥାଏ ଓ ବିଭିନ୍ନ ପରାମର୍ଶ ନେଇଥାଏ; ବିଶେଷକରି ରାଉରକେଲାରେ ଏକ ନୂତନ ଅନୁଷ୍ଠାନ- ''ରାଉରକେଲା ମ୍ୟୁଜିକ୍ ସର୍କଲ''କୁ ଆରମ୍ଭ କରିବା ପରେ।

୧୯୫୦ ମସିହାରୁ ଡକ୍ଟର ମହତାବଙ୍କୁ ମୋ ଅଜାଙ୍କ ଘରକୁ ଆସିବାର ମୁଁ ବାରମ୍ବାର ଦେଖିଛି ଓ ଆମ ଅଜାଙ୍କ ଘରେ ଆଜିଯାଏ ଗୋଟାଏ

ବଡ଼ ଆରାମ ଚିଆର ଅଛି- ଯାହାକୁ ଆମେ ସମସ୍ତେ ମହତାବବାବୁଙ୍କ ଚିଆର ବୋଲି କହିଥାଉ, ଆଉ ଡକ୍ଟର ମହତାବ ଆସିଲେ ପ୍ରାୟତଃ ଅଜା ତାଙ୍କୁ ସେଇ ଚିଆରରେ ବସେଇଥାଆନ୍ତି। ଅଜାଙ୍କର ଭଦ୍ରକକୁ ଗଢ଼ିତୋଳିବାର କାରିଗରୀରେ ଡକ୍ଟର ମହତାବଙ୍କର ଯାଦୁ ସ୍ପର୍ଶ ସର୍ବଦା ତାକୁ ଉଦ୍‌ବୁଦ୍ଧ କରୁଥିଲା ଓ ଏକଥା ସମସ୍ତେ ସ୍ୱୀକାର କରିବେ ଯେ ମୋ ଅଜା ସ୍ୱର୍ଗତ ନରେନ୍ଦ୍ର ପ୍ରସାଦ ଦାସ ଓ ତାଙ୍କର ପରମ ବନ୍ଧୁ ଉତ୍କଳକେଶରୀ ହରେକୃଷ୍ଣ ମହତାବଙ୍କର ଅପୂର୍ବ ସହଯୋଗ, ଉଦ୍ୟମ ଓ ପ୍ରଚେଷ୍ଟାର ଫଳ ହେଉଛି ଆଜିର ଭଦ୍ରକ। ହୁଏତ ଅନେକ ମହାରଥୀ ଯେ ସେ ସାଗର ସଙ୍ଗମରେ ଆସି ଆହୁରି ଲହରୀ ଉତ୍ତୋଳନ କରିନାହାନ୍ତି ତାହା ଅସ୍ୱୀକାର୍ଯ୍ୟ ନୁହେଁ; କିନ୍ତୁ ପ୍ରଥମ ଉତ୍ତରଣର ମଶାଲ୍ ଜାଳିଥିଲେ ଏଇ ଦୁଇବନ୍ଧୁ, ଯାହାଙ୍କର ଆଦର୍ଶ ପ୍ରତି ପଦକ୍ଷେପରେ ପ୍ରାୟ ମୁଁ ସ୍ମରଣରେ ଓ ସେଇ ସ୍ୱପ୍ନର ସିଂହାସନକୁ ଅବଲୋକନ କରି ଜୀବନର ସାଫଲ୍ୟ ପାଇଁ ବାରମ୍ବାର ଆଶୀର୍ବାଦ ଭିକ୍ଷା କରିଥାଏ।

ମୁଁ ସେତେବେଳେ ନୂଆ ନୂଆ କରି କବିତା ଓ ଗଳ୍ପ ଲେଖୁଥାଏ। ୧୯୬୪-୬୫ ମସିହା କଥା। ନାରୀ ଜଗତ ପରିଚାଳନାରେ ଥାଆନ୍ତି ଶ୍ରୀମତୀ ନିହାର ନାୟକ-ପ୍ରଜାତନ୍ତ୍ର ସମ୍ପାଦକ ଥାଆନ୍ତି ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ। ୬୭-୬୮ ମସିହା ହେବ, ମୁଁ ମୋ କବିତା ପାଇଁ ପାଇଥାଏ ନାରୀଜଗତ ପୁରସ୍କାର। ସେଥରକ ଅବଶ୍ୟ ପୁରସ୍କାର ସଭାରେ ମୁଁ ବେଶୀ ସମୟ ରହିପାରିନାହିଁ କି ତାଙ୍କ ସହିତ କଥା ହେଇ ପାରିନାହିଁ। ସେତେବେଳେ ବାହାରେ ସାମିଆନା ଟଙ୍ଗା ହେଇ ଚାଲୁଥାଏ, ବିଷୁବ ମିଳନ।

ତା'ପରେ ମୋ ଚାକିରୀ ଓ ସଂସାର ଧରି ମୁଁ ଚାଲିଆସେ ରାଉରକେଲା। ଭଦ୍ରକ ସହିତ ସଂପର୍କ ଧୀରେ ଧୀରେ କମିଯାଉଥାଏ। ରାଉରକେଲାର ଅପୂର୍ବ ପ୍ରାକୃତିକ ଶୋଭା, ଫର୍ନେସର ଧୂଆଁ, ସଫାପେଭମେଣ୍ଟ, ରିଂ ରୋଡ଼, ଆଲୁଅ ଏସବୁ ମୋର କଳ୍ପନା ଉଚ୍ଛ୍ୱସିତ ପ୍ରାଣକୁ ଅଗାଧ ତୃପ୍ତି ଦେଉଥାଏ, ଆଉ ଏମିତି ପ୍ରଶସ୍ତ ପରିଚ୍ଛନ୍ନ ସହରରେ ମୁଁ ଏକ ବଳିଷ୍ଠ ସଂସ୍କୃତିର ସ୍ୱପ୍ନରେ ବିଭୋର ହେଇ, କେତେକ ବିଶିଷ୍ଟ ବ୍ୟକ୍ତିଙ୍କର ସାହାଯ୍ୟରେ ଆରମ୍ଭ କରେ ରାଉରକେଲା ମ୍ୟୁଜିକ ସର୍କଲ : ଭୁବନେଶ୍ୱରସ୍ଥିତ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ ପରି ରାଉରକେଲାଠାରେ ଏକ ସଙ୍ଗୀତ ମହାବିଦ୍ୟାଳୟ ପ୍ରତିଷ୍ଠାର ଉଦ୍ୟମ।

ସେତେବେଳକୁ ରାଉରକେଲାସ୍ଥ କେତେକ ବିଶିଷ୍ଟ ବ୍ୟକ୍ତି ଓ ସାମ୍ବାଦିକମାନଙ୍କ ଉଦ୍ୟମରେ ଇସ୍ପାତ କଲେଜର ହୋଇଥାଏ ଅୟମାରମ୍ଭ, ଏବଂ ଡକ୍ଟର ମହତାବ ଆସିଥାଆନ୍ତି, ସେମାନଙ୍କର ନିମନ୍ତ୍ରଣରେ ରାଉରକେଲା। କେତେକ ଉଦ୍ୟୋକ୍ତାମାନଙ୍କୁ ଅନୁରୋଧ ଜଣାଇ ଡକ୍ଟର ମହତାବଙ୍କୁ ଆମ ଅନୁଷ୍ଠାନକୁ ଆଣିବାର ଚେଷ୍ଟା ମୋର ସଫଳ ହେଲା। ସେତେବେଳେ ଆମ ଅନୁଷ୍ଠାନର ଚେୟାରମେନ ଥାଆନ୍ତି ଶ୍ରୀଯୁକ୍ତ ଏନ.ସି. ନାୟକ। ମୁଁ ମୋର ଅଜାଙ୍କ ପରିଚୟ ଡକ୍ଟର ମହତାବଙ୍କୁ ଦେଲି ଓ ଆମେ ଅନୁଷ୍ଠାନଟିଏ ଗଢ଼ିଛୁ ଶୁଣି ସେ ଖୁବ୍ ଆନନ୍ଦିତ ହେଲେ ଓ ଅଧଘଣ୍ଟା ପାଇଁ ସେ ବର୍ତ୍ତମାନର ୧୭ ନମ୍ବର ସ୍ଥିତ ଆଇ.ଏଲ.ଏସ. ସ୍କୁଲ (ମ୍ୟୁଜିକ ସର୍କଲ) କୁ ଆସି ଆମକୁ ତଥା ଆମ ଅନୁଷ୍ଠାନକୁ ଆଶୀର୍ବାଦ ଦେଲେ। ଆମ ଗହଣରେ ପ୍ରାୟ ଅଧଘଣ୍ଟା କାଳ ରହି ସେ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ଯୋଗଦେବା ପାଇଁ ଚାଲିଗଲେ। ଯିବା ବେଳକୁ କହିଗଲେ, କଟକ ବା ଭୁବନେଶ୍ୱର ଗଲେ ମୋତେ ସାକ୍ଷାତ କରିବ।

ସେତେବେଳକୁ ଅନୁଷ୍ଠାନଟି ଷଠିଘରୁ ତାର କୁଆଁରାବ ହୁଏତ ସାରି ନଥାଏ। ବର୍ଷଟିଏ ଯାଇନାହିଁ ଆମ କମିଟିର, ମୁଖ୍ୟ ବ୍ୟକ୍ତିମାନେ ବିଭିନ୍ନ କର୍ମକ୍ଷେତ୍ରକୁ ବଦଳି ହେଇଗଲେ। ବାକି ରହିଲେ ଶ୍ରୀ ନରେଶ ଚନ୍ଦ୍ର ନାୟକ। ସେ ମଧ୍ୟ ଇସ୍ପାତ କାରଖାନରେ ଜି.ଏମ. ଭାବରେ କାର୍ଯ୍ୟ ଭାର ଗ୍ରହଣ କରି ଅତ୍ୟନ୍ତ କର୍ମବ୍ୟସ୍ତ ହେଇପଡ଼ିଥାଆନ୍ତି। ଏକ ମହାସମୁଦ୍ର ଲହରୀ ଭିତରରେ, ତରୀଟି ଦୋହଲିଲା ଭଳି ଦଶା ହେଲା ଅନୁଷ୍ଠାନଟିର। କିଏ ହେବ ଏହାର କାଣ୍ଡାରୀ, ଅର୍ଥ ଓ ପରିଚାଳନା ପାଇଁ କିଛି କୂଳ କିନାରା ମୋତେ ମିଳୁ ନଥାଏ। କେମିତି ବି ଏସବୁ କାମ ହୁଏ ସେ ସବୁର ଅନୁଭୂତି ମଧ୍ୟ କିଛି ପ୍ରାୟ ନଥାଏ, ତଥାପି ପଛରେ ଛାଡ଼ି ଆସିଥିବା ଅନେକ ସ୍ମୃତି ମନକୁ ଉଦ୍‌ବୁଦ୍ଧ କରେ। ପୃଥିବୀ ଅନ୍ଧକାର ହେଇ ଆସିଥିବାବେଳେ, ରିଙ୍ଗରୋଡ଼ର ବତୀ ଖୁଣ୍ଟଟି ଜଳିଉଠେ ଫ୍ଲୋରେସେଣ୍ଟ ଆଲୁଅ, ଠିକ୍ ସେଇମିତି ମହାଅନ୍ଧକାର ଯେବେ ଆସିଲାଣି ତ ସୂର୍ଯ୍ୟୋଦୟ ଆଉ ଟିକିଏ ବାକି।

ଏଇ ପ୍ରକାର ନାନା ଚିନ୍ତା ମଧ୍ୟରେ ଶ୍ୱାସ ରୁଦ୍ଧ ହେଇଯାଉଥିବାବେଳେ, ମୁଁ ସେଇ ଉତ୍କଳକେଶରୀଙ୍କର ଦ୍ୱାରସ୍ଥ ହେଇଥିଲି, ଭୁବନେଶ୍ୱର ଏକାମ୍ର ନିବାସରେ।

ପ୍ରଥମ ପ୍ରଶ୍ନ... କେବେ ଆସିଲ ?

ମୁଁ କିଛି ଫଳ ଆଉ ମିଠା ନେଇ ଥାଏ ସାଙ୍ଗରେ।

ପଚାରିଲେ- ଏସବୁ କିଏ ଖାଇବ ହୋ... ଏତେ କ'ଣ ଧରି ଆସିଛ..? ମୁଁ କହିଲି ସାମ୍ନାରେ ଏନୁଏଲ ଡେ ଟଙ୍କା କଉଠୁ ମିଳିବ? ମୋତେ ତ କୌଣସି ବ୍ୟବସାୟୀ ଚିହ୍ନନ୍ତି ନାହିଁ-କିଏ ଟଙ୍କା ଦେବ? ଅନୁଷ୍ଠାନ ଏଇଠି ବନ୍ଦ''।

କେଶରୀ ଭଳି ଚେହେରାଟିଏ, କିନ୍ତୁ ଭିତରେ ସର୍ବଦା ଟୁଲ୍ ଟୁଲ୍ କରୁଥାଏ ଗୋଟାଏ କମ୍ର ଶିଶୁ-ପ୍ରାଣ। ଅସରନ୍ତି ସ୍ମୃତିର ଗନ୍ତାଘର ଏଇ ମହତାବଜୀ।

ସେତେବେଳକୁ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଥାଆନ୍ତି ସାଂସ୍କୃତିକ ବିଭାଗର ମନ୍ତ୍ରୀ। ତାଙ୍କୁ ସାଙ୍ଗେ ସାଙ୍ଗେ ଫୋନ ଉଠେଇଲେ ଓ ସ୍ଲିପ୍‌ଟିଏ ଲେଖି ମୋ ହାତରେ ଦେଲେ। ଲାଠିକଟା ମ୍ୟାନେଜିଂ ଡାଇରେକ୍ଟର ଶ୍ରୀ କାଶୀପ୍ରସାଦ ଝୁନ୍‌ଝୁନ୍‌ୱାଲା ଓ ରାଜଗାଙ୍ଗପୁର ସିମେଣ୍ଟ କାରଖାନାର ଶ୍ରୀ ଏମ.ଏଲ.ଚାନ୍ଦଙ୍କ ନିକଟକୁ ଲେଖିଦେଲେ ଦୁଇଟି ବ୍ୟକ୍ତିଗତ ଚିଠି। ତହିଁ ଆରଦିନ ସକାଳେ ମୁଁ ମନ୍ତ୍ରୀ ଶ୍ର ବିଶ୍ୱଭୂଷଣ ହରିଚନ୍ଦନଙ୍କ ଘରକୁ ଯାଇ ତାଙ୍କୁ ସାକ୍ଷାତ କଲି ଓ ସେଇ ବର୍ଷ ଆମ ଅନୁଷ୍ଠାନକୁ ରାଜ୍ୟ ସଂସ୍କୃତି ବିଭାଗ ତରଫରୁ ଦୁଇହଜାର ଟଙ୍କା (ଟ.୨୦୦୦/-) ନନ୍‌ରେକରିଂ ଗ୍ରାଣ୍ଟ ସୁପାରିଶ ହେଲା। ପରବର୍ତ୍ତୀ ପୂର୍ବତନ ମନ୍ତ୍ରୀ ଶ୍ରୀ ଯୁଗଳ କିଶୋର ପଟ୍ଟନାୟକଙ୍କ ସୁପାରିଶକ୍ରମେ ପାଞ୍ଚ ହଜାର ଟଙ୍କା (ଟ.୫୦୦୦/-) ରେକରିଂ ଗ୍ରାଣ୍ଟକୁ ଓ ବର୍ତ୍ତମାନ ତାହା ସଂସ୍କୃତି ନିର୍ଦ୍ଦେଶକଙ୍କ ସୁପାରିଶକ୍ରମେ ଅବଶ୍ୟ ଆଠ ହଜାର (ଟ.୮୦୦୦/-)କୁ ଉନ୍ନୀତ ହେଇଛି। ସବୁଠାରୁ ଆଶ୍ଚର୍ଯ୍ୟ କଥା, ଏଇ ଶିଳ୍ପପତିମାନଙ୍କୁ ସେ ଚିଠି ଲେଖିଲେ, ଇଫାପା ବନ୍ଦ ଥିଲା। ହଠାତ୍ ଦିନେ ଦେଖିଲି, ଶ୍ରୀ କାଶୀପ୍ରସାଦ ଝୁନ୍‌ଝୁନ୍‌ୱାଲା ଆମ ଘରକୁ ଆସିଛନ୍ତି ଓ ପିଲାଙ୍କ ପୁରସ୍କାର ପାଇଁ ମୋ ହାତରେ ତିନିହଜାର ଟଙ୍କା ଦେଇ ଚାଲିଗଲେ, ପରବର୍ତ୍ତୀ ଶ୍ରୀ ଏମ୍.ଏଲ୍. ଚାନ୍ଦଙ୍କର ବାର୍ତ୍ତା ପାଇ ମୁଁ ମୋର ଦୁଇଜଣ ସଭ୍ୟଙ୍କୁ ନେଇ ଗଲି ରାଇରଙ୍ଗପୁର ଓ ଶ୍ରୀ ଏମ.ଏଲ୍. ଚାନ୍ଦ ଆମକୁ ଅନେକ ଆତିଥ୍ୟ କରି ଗେଷ୍ଟ ହାଉସରେ ଖୁଆଇଲେ ଓ ଆନୁଏଲ ଡେ ପାଇଁ ପାଞ୍ଚ ହଜାର ଟଙ୍କା ଦେଲେ। ଏ ସବୁ ଘଟଣାର ଘନଘଟା, ଅସରନ୍ତି ସ୍ମୃତି ଗଚ୍ଛିତ ହେଇଛି ତାଙ୍କୁ କେନ୍ଦ୍ରକରି, ଆଜି ସେଇ ସମ୍ବେଦନଶୀଳ, ସ୍ନେହଶୀଳ ଆତ୍ମାଟିକୁ ସୁମରି ସୁମରି, ଭାରି ନିଃସଙ୍ଗ ଲାଗେ।

ଚାରିଆଡ଼େ ଆଜି ଏକାକୀତ୍ୱର କୁହୁଡ଼ି ଡାକି ଯାଉଛି। କିଏ ଦେବ ସେଭଳି ଆସ୍ତରଣ...? ଜୀବନ୍ୟାସ ??

୧୯୮୦ ମସିହା, ସେ ବର୍ଷ ମ୍ୟୁଜିକ ସର୍କଲ ରାଉରକେଲାର ଥାଏ ତୃତୀୟ ବସନ୍ତ ସମାରୋହ, କହିଲି, ''ଆପଣ ଏଥର ଆମ ଉତ୍ସବ ପାଇଁ ଆସନ୍ତୁ ରାଉରକେଲା..।'' ମୁଁ ଆଶ୍ଚର୍ଯ୍ୟ ହେଲି ସେ ଚଟକିନା ରାଜି ହେଇଗଲେ ଓ ଉଡ଼ାଜାହାଜରେ ଉଡ଼ିଆସିଲେ ରାଉରକେଲା। ମଞ୍ଚରେ କହିଲେ, ତା' ଅଜା ନରିବାବୁ ମୋର ବିଶେଷ ଅନ୍ତରଙ୍ଗ। ତା' ଡାକରା ଏଡ଼ି ପାରିଲି ନାହିଁ। ସେଦିନ ସନ୍ଧ୍ୟାରେ, ତାଙ୍କୁ ତୁଷ୍ଟ କରିବା ପାଇଁ ମୁଁ ସାଂସ୍କୃତିକ କାର୍ଯ୍ୟକ୍ରମରେ ସଙ୍ଗୀତ ପରିବେଷଣ କରିଥାଏ। ଗୁରୁ ଶ୍ରୀ ପଙ୍କଜ ଚରଣ ଦାସଙ୍କୁ ସେ ସନ୍ଧ୍ୟାରେ ଆମେ ଅନୁଷ୍ଠାନ ତରଫରୁ ସମ୍ମାନ ପ୍ରଦର୍ଶନ କରିଥାଉ ଓ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ କଳାକାର ଶ୍ରୀ ଟି. ଏନ. କ୍ରିଷନ ଆସିଥାଆନ୍ତି ବେହେଲା ବାଦନ ପାଇଁ ଅତିଥି କଳାକାର ଭାବରେ।

କାର୍ଯ୍ୟକ୍ରମର କିଛି ପର୍ବ ଦେଖି, ସେ ଚାଲିଗଲେ ରାଉରକେଲା ହାଉସ..। ତହିଁ ଆରଦିନ ମୋ ଘରେ ସକାଳର ଜଳଖିଆ ସାରି ସେ ଫେରି ଆସିଲେ ଭୁବନେଶ୍ୱର। ଯିବାବେଳେ କହିଲେ- ଜଗନ୍ନାଥ ମନ୍ଦିର ବେଶୀ ପୁରାତନ ବୋଲି, ଲୋକେ ସେ ଠାକୁରଙ୍କୁ ଏତେ ବିଶ୍ୱାସ ଓ ଭକ୍ତି କରନ୍ତି। ଅନୁଷ୍ଠାନଟି ଯେବେ ପୁରୁଣା ହେଇଯିବ, ଲୋକେ ତମକୁ ବିଶ୍ୱାସ କରିବେ। ପାଞ୍ଚଟି ନିଷ୍ଠାପର ସାଙ୍ଗ କରିବ, ଯେଉଁମାନେ ତମକୁ ସବୁବେଳେ ଅକୁଣ୍ଠ ଚିତ୍ତରେ ସାହାଯ୍ୟ କରୁଥିବେ। ମୁଁ ଜାଣିନାହିଁ ତାଙ୍କର ପ୍ରତିକଥାରେ କି ଯାଦୁ ସ୍ପର୍ଶ ଥିଲା, ତାଙ୍କର ପ୍ରତିଟି କଥା ମୋତେ କାହିଁକି କେଜାଣି ଭାରି ସ୍ପର୍ଶ କରୁଥିଲା।

ତା'ର ଠିକ୍ ବର୍ଷକ ପରେ, ମୁଁ ରେଡିଓ ରେକର୍ଡ଼ିଂ କରିବା ପାଇଁ କଟକ ଯାଇଥାଏ, ସଙ୍ଗୀତ ନାଟକ ଏକାଡ଼େମୀ ଅଫିସରେ ଡକ୍ଟର କୃଷ୍ଣଚରଣ ବେହେରା କହିଲେ ବିଷୁବର ଗଳ୍ପ ପାଇଁ ମୋର ପୁରସ୍କାର ଅଛି ଏବର୍ଷ। ମିଟିଂ ତା' ପରଦିନ। ଚିଠି ରାଉରକେଲା ଆସିଛି, ମୋତେ ମିଳିନାହିଁ- ମୁଁ ଚାଲି ଆସିଛି କଟକ। ଖବରଟା ଠିକ୍ କି ନୁହେଁ ଜାଣିବା ପାଇଁ ଗଲି ପ୍ରଜାତନ୍ତ୍ର ଅଫିସ।

ତହିଁ ଆରଦିନ ସଭା ଆରମ୍ଭରୁ ଦେଖିଲି ଡକ୍ଟର ମହତାବ ବସିଛନ୍ତି। ମୁଁ ପୁରସ୍କାର ନବାକୁ, ଯେତେବେଳେ ମଞ୍ଚ ଉପରକୁ ଗଲି ତାଙ୍କ ଭିତରେ

ଗୋଟାଏ ଛୋଟ ଶିଶୁଟିଏ ଯେମିତି ଆନନ୍ଦରେ କୁରୁଳି ଉଠୁଥିଲା, ମୋତେ ସେଇଭଳି ଅନୁଭବ ହେଲା। ସଭାପରେ ମୋତେ କହିଲେ, ତମେ ଆଜି ସାଂସ୍କୃତିକ କାର୍ଯ୍ୟକ୍ରମରେ ଗୀତ ବୋଲିବ। ମୁଁ କହିଲି ମୁଁ ସେଭଳି ପ୍ରସ୍ତୁତ ହେଇ ଆସିନାହିଁ, ତା'ଛଡା ରାଉରକେଲା ଯିବି ବୋଲି ତ ମୋର ଟିକଟ କଟା ସରିଲାଣି। ବସ୍ ସନ୍ଧ୍ୟା ସାତଟାରେ। ପାଦଛୁଇଁ ପ୍ରଣାମଟିଏ କଲି, ମନଟା ମୋର ଦୁଃଖ ବି ହେଲା ଯେ, ମୁଁ ତାଙ୍କ କଥା ରଖିପାରିଲି ନାହିଁ, କିନ୍ତୁ ସେ ରାଉରକେଲାଠାରେ ମୋ ସଙ୍ଗୀତ ପରିବେଷଣକୁ ସ୍ମରଣ କରି ମୋ ପ୍ରତି ଏ ପ୍ରକାର ଇଛା ପ୍ରକାଶ କରିଥିଲେ ତାଙ୍କ ବହୁ କାର୍ଯ୍ୟକ୍ରମ ମଝିରେ ବି ମୋ ପ୍ରତି ତାଙ୍କର କି ଅପାର ଦୟା...?

ମଝିରେ ଥରେ ଏମିତି ହେଲା, ମୋର ଗୋଟାଏ ଝଙ୍କାରରେ ପ୍ରକାଶିତ ହେଇଥିବା ଗଳ୍ପ 'ଶତରୂପାର ରୁବାୟତ' ପଢ଼ି ଡକ୍ଟର ମହତାବ ମୋତେ ପ୍ରଶଂସା କରି ଚିଠିଟିଏ ଲେଖିଥିଲେ। ତା'ପରେ ପରେ ଦୁଇଟି ଗଳ୍ପ ମୋର ଅନେକ ଦିନ ପଡ଼ି ରହିଲା, ପ୍ରକାଶ ପାଇଲା ନାହିଁ। ମୁଁ ଡକ୍ଟର ମହତାବଙ୍କୁ ଏ ବାବଦରେ ଜଣେଇଲି, ସେ ସାଙ୍ଗେ ସାଙ୍ଗେ ସରୋଜବାବୁ ( ଶ୍ରୀ ସରୋଜରଞ୍ଜନ ମହାନ୍ତି)ଙ୍କୁ ପଚାରିଲେ। ସରୋଜବାବୁ ମୋ ଉପରେ ଟିକିଏ କ୍ଷୁବ୍ଧ ହେଲେ। ଯଦିଓ ସରୋଜବାବୁ ହିଁ ମୋ ଗଳ୍ପଗୁଡ଼ିକ 'ଝଙ୍କାର'ରେ କ୍ରମାନ୍ୱୟ ଭାବେ ଶୀଘ୍ର ହେଉ ବା ବିଳମ୍ବରେ ହେଉ ନିଶ୍ଚୟ ପ୍ରକାଶ କରିଥାଆନ୍ତି। ପରିସ୍ଥିତିଟା ଏମିତି ଅଡୁଆ ହୋଇଯିବ ବୋଲି ଜଣା ନଥିଲା। ତା ପରେ ଯାହା ବି ହେଉ, ବୁଝାମଣା ହେଇଗଲା ଆମ ସମସ୍ତଙ୍କ ମଧ୍ୟରେ।

ଡକ୍ଟର ମହତାବ ମୋତେ ଅନେକ ଶ୍ରଦ୍ଧା କରୁଥିଲେ ଏବଂ ଶେଷ ଦଶକ ମୁଁ ଅତି ଘନିଷ୍ଠ ଭାବରେ ତାଙ୍କ ସହିତ ସଂପୃକ୍ତ ଥିଲି ଓ ତାଙ୍କ ନିକଟକୁ ଯାଉଥିଲି। ମୋ ଗଳ୍ପ ଲେଖାରେ କ୍ରମ ଉତ୍ଥାନକୁ ସେ ସର୍ବଦା ଉତ୍ସାହ ପ୍ରଦାନ କରୁଥିଲେ ଓ ଆମ ଅନୁଷ୍ଠାନ ରାଉରକେଲା ମ୍ୟୁଜିକ୍ ସର୍କଲ ପ୍ରତି ତାଙ୍କର ଥିଲା ଅଗାଧ ମମତା ଓ ଅକୁଣ୍ଠ ସହାନୁଭୂତି।

ମହତାବଜୀଙ୍କ ଜୀବନର ଶେଷ ପ୍ରହର ହେଇ ଆସୁଥାଏ। ମିଞ୍ଜି ମିଞ୍ଜି ହେଇ ଜଳୁଥାଏ ଜୀବନର ବତୀ...। ଏଇ ନିଭିଯିବ ହୁଏତ, ଆଉ ଗୋଟିଏ ବତୀଖଣ୍ଡ, ତାପରେ ସବୁ ସରିଯିବ..। ଏଇ ଆତଙ୍କରେ କେମିତି ମୁଁ ସର୍ବଦା ଆତଙ୍କିତ ହେଉଥାଏ।

ଅଜା କେମିତି ଅଛନ୍ତି? ବୁଢ଼ାଙ୍କର ବାରମ୍ବାର ପ୍ରଶ୍ନ। ବାରଣ୍ଡାରୁ ପଡ଼ି ଅଜାଙ୍କର ଗୋଡ ଭାଙ୍ଗି ଯାଇଥାଏ, ତାପରେ କଟକ ଡାକ୍ତରଖାନାରେ ଅପରେସନ। ପରିଶେଷରେ ତିନିବର୍ଷ ଧରି ପ୍ରାଣଛଡ଼ା କଷ୍ଟ ପାଇ ପାଇ ସେ ମହତାବଜୀଙ୍କ ଚିଆର ଉପରେ ନେଲେ ଶେଷ ନିଶ୍ୱାସ।

ଅଜା ଚାଲିଗଲେ। ଗୋଟାଏ ବତୀ ଲିଭିଗଲା। ଆଉ କିଛିଦିନ ପରେ ଚାଲିଯିବେ ଉତ୍କଳକେଶରୀ। ମହତାବଜୀ ପ୍ରଶ୍ନ କଲେ, ବୁଢ଼ା ଠିଆ ହେଇ ପାରୁ ନଥିଲେ, କିଏ ସେବାଯତ୍ନ କରୁଥିଲେ, ପୁଅ ତ ବାହାରେ ଥାଆନ୍ତି...।

ଉତ୍ତରରେ କହିଥିଲି ମୋ ମା.... ଅଜାଙ୍କର ତେତିଶ ବର୍ଷର ସେବିକା।

ହଠାତ୍ ଦେଖିଲି ତାଙ୍କ ଆଖି ଲୁହରେ ଜକେଇ ଗଲା। ଓଠଟାକୁ ଟିକିଏ ଟାଣ କରି କିଛି କହିବେ ବୋଲି ଚୁପ୍ ହେଇଗଲେ। ସେଇ ମୁହୂର୍ତ୍ତରେ, ହଠାତ୍ ଯେମିତି ସେ କାହିଁକି କେଜାଣି ଅନୁଭବ କରୁଥିଲେ, ସେ ଭାରି ଏକୁଟିଆ- ଭାରି ନିଃସ୍ୱ... ନିଃସଙ୍ଗ...।

ତା'ପରେ ପୁଣି ପ୍ରକାଶନର ଭଙ୍ଗୀ ବଦଳାଇ କହିଲେ, "ନରିବାବୁ ଚାଲିଗଲେ- ଏବେ ଆମ ପାଳି ଆସୁଛି।"

ମୁଁ ବାଷ୍ପ ବିଷ୍ଫାରିତ କଣ୍ଠରେ କହିଲି, ଆପଣ ସେମିତି କହନ୍ତୁ ନାହିଁ। ଆପଣଙ୍କ ଗଛଡାଳରେ ଆମ ଭଳି କେତେ ଅସହାୟ ଚଢେଇ ବସା ବାନ୍ଧିଛୁ, ଆଶ୍ରା ନେଇଛୁ, ଆମେ ପୁଣି କ'ଣ କରିବୁଁ...? କେମିତି ଚଳିବୁ?? ଜଗନ୍ନାଥେ ଆପଣଙ୍କୁ କୋଟି ପରମାୟୁ ଦିଅନ୍ତୁ।

ଗୋଟାଏ ମଲା ଚଢ଼େଇକି ଦେଖି, ଆଉ ଗୋଟାଏ ଯେମିତି ଖାଲି ଅଜାଙ୍କର ମୃତ୍ୟୁକୁ ସ୍ମରଣ କରି, ସେଇଭଳି ଅସ୍ଥିର ହବାକୁ ଲାଗିଲେ ଡକ୍ଟର ମହତାବ। ଏତେ ବଡ ବିରାଟ ରାଜନୀତିଜ୍ଞ, ଶିକ୍ଷାବିତ, ଐତିହାସିକ, ସଂଗଠକ, ଜନନାୟକ ବି ସେଦିନ ମୃତ୍ୟୁର ଅନ୍ଧକାରର ନିଆଁଟାକୁ ଯେମିତି ଦେଖିବାକୁ ପାଇଥିଲେ ସେଇ ଥିଲା ମୋର ତାଙ୍କ ସହିତ ଶେଷ ସାକ୍ଷାତ।

ଶୀତର ପ୍ରକୋପରେ ମୋ ମାଁ ଖଳାବାଡ଼ିରେ ଖରାରେ ରେଙ୍ଗେଇ ଘୋଡ଼ି ଶୋଇଥାଏ, ମୁଁ କହୁଥାଏ ମାଁ। ଆଉ ମହତାବଜୀ ବୋଧହୁଏ ବଞ୍ଚିବେ ନାହିଁ, ସବୁଥର ତାଙ୍କ ସେକ୍ରେଟେରୀ ତ ମୋତେ ସାଙ୍ଗେ ସାଙ୍ଗେ ଫୋନ ଲାଇନ ଦିଅନ୍ତି, କଥା କହିବା ପାଇଁ, ଏଥର କିନ୍ତୁ ପୁରା ମନା କରିଦେଲେ ମୁଁ ଆଉ ଗଲିନାହିଁ- କାଳେ ଦେଖିବାକୁ ନଦେବେ।

ଦିନ ଗଡ଼ି ଯାଉଥାଏ। ପ୍ରାୟ ଗୋଟାଏ ବେଳକୁ ଆମ ଗାଁର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ଆସି ଖବର ଦେଲେ- 'ମହତାବଜୀ ଚାଲିଗଲେ-'
--ଛାତିଥରା ଅନ୍ଧାରଟା ମୋତେ କିଛି ସମୟ ପାଇଁ ଚାପି ଧରିଲା।

ଅଜା ଗତାୟୁ.. ମହତାବ୍‌ଜୀ ଆଜି ମୃତ୍ୟୁ ଶଯ୍ୟାରେ। ମାଁ ଅପେକ୍ଷା କରିଛି ସେଇ ମହାଅନ୍ଧକାରକୁ। ୧୯୮୭ର ଦୁଇତାରିଖ ଜାନୁଆରୀ- ଅଗରପଡ଼ା ମାଟିରେ ବିଶାଳ ଜନସମାବେଶ ମଧ୍ୟରେ ସେଇ ସିଂହ କେଶରୀଙ୍କର, ଚନ୍ଦନ କାଠ ଶେଯରେ ହେଲା ମହାନିଦ୍ରା। ମୃତ୍ୟୁର ନିଃସଙ୍ଗ ବାଘଟା ସବୁଦିନ ପାଇଁ ଏ ଜାତିକି ନିଃସ୍ୱ କରି ନେଇଗଲା କେଉଁ ଅମଡ଼ା ଜଙ୍ଗଲକୁ? କିଏ ବା ଆଉ ଯାଇ ଖୋଜି ପାଇବ ତାଙ୍କୁ?

ଆଜି ସେଇ ଅମର ଆତ୍ମାକୁ ମୋର କୋଟିଏ ପ୍ରଣାମ।

ହେ ଉତ୍କଳକେଶରୀ! ପୁଣି ଥରେ ତମେ ଫେରିଆସ, ଏ ଯୁବପୀଢ଼ି ଓ ଆମ ସମସ୍ତଙ୍କୁ ଆଶୀର୍ବାଦ କର। ପୁଣି ଥରେ ଓଡ଼ିଶାର ମୁକ୍ତାଝରା ମହାନଦୀରେ ସୁନାର ବୋଇତ ଭାସିଯାଉ- ଫେରିଆସୁ ପୁଣି ସେଇ ଐଶ୍ୱର୍ଯ୍ୟ ଆଉ ଗାରିମାଭରା ଉତ୍କଳ।

ବି. ୫୦, ସେକ୍ଟର ୧୭
ରାଉରକେଲା-୩



# ନୂପୁର ରୁଣୁଝୁଣୁ

## ରବି କାନୁନ୍‌ଗୋ

ସାତ ଅନ୍ଧଙ୍କ ହାତୀ 'ଦେଖା'କୁ ଉପହାସ କରାଯାଏ। ଆଖିଥିବା ଲୋକେ ଅନ୍ଧର ଅନୁଭୂତିକୁ ଅବଜ୍ଞା କରନ୍ତି। ଯଦି ପଚରା ଯାଆନ୍ତା : ଠିକ୍ ଅଛି ଭାଇ, କହିଲ ଭଲା, ଅନ୍ଧ ହାତୀକୁ ଚିହ୍ନିବ କେମିତି ? ଆଖିଥିବା ଲୋକଙ୍କ ଅକଲ ଗୁଡୁମ ହୋଇଯାଏ। ପୂଜ୍ୟ ଡକ୍ଟର ମହତାବଙ୍କ ସଂପର୍କରେ ସେହିପରି ଅନୁଭୂତିରୁ କେତୋଟି।

ସ୍ମୃତି ଅତି ଝାପସା। ବାରିପଦା ଏମ.କେ.ସି. ହାଇସ୍କୁଲର ପଞ୍ଚମ ଶ୍ରେଣୀର ଛାତ୍ର। କାଲାଇଡୋସ୍କୋପର ସବୁଯାକ ବର୍ଣ୍ଣ ବୈଚିତ୍ର୍ୟ ଆବୋରି ନେବା ପରି ବୟସ। ଶିକ୍ଷକ ଓ ଗୁରୁଜନଙ୍କୁ ଲୁଚାଇ କବିତା ଲେଖୁଥିଲି। ସେ କାଳର ପ୍ରକାଶନର ସୁଯୋଗ ନଥାଏ ବା ମୁଁ ଜାଣି ନଥାଏ। ଜଣେ ଶିକ୍ଷକ ରଫ ଖାତାରେ ପୂଜାଏ କବିତା ଦେଖି ମୋତେ ମାରିଲେ ନାହିଁ। ସେ ସେଥିରୁ ତିନୋଟି ବା ଚାରୋଟି କବିତା ବାଛି ଦେଇ ଭଲ ଅକ୍ଷରରେ ଉତାରିବାକୁ କହିଲେ। ଅଣାକିଆ ଲଫାପାରେ ସେ ନିଜେ ଠିକଣା ଲେଖିଲେ, ପଠାଇଦେଲେ। କାମ ସରିଲା, ଅଥଚ କଥା ସରିଲା ନାହିଁ।

ସେଥିରୁ ଗୋଟିଏ କେତେଦିନ ପରେ 'ପ୍ରଜାତନ୍ତ୍ର'ର 'ମୀନାବଜାର'ରେ ପ୍ରକାଶିତ ହେଲା। ଉଲ୍ଲାସ ପାଇଁ ସାଙ୍ଗମାନଙ୍କ ଗହଣରେ ଚୁପଚାପ୍ ବାରମଜା ଖାଇବା ଛଡ଼ା ବହକ ବୁଦ୍ଧି ନଥିଲା।

ଏମ୍.କେ.ସି. ଓଡ଼ିଶାର ଦୁଇ ନମ୍ବର ସ୍କୁଲ। ହେଡ୍‌ମାଷ୍ଟର ଥା'ନ୍ତି ଶ୍ରୀଯୁକ୍ତ ଗୌରୀପଦ ତ୍ରିପାଠୀ। ଥରେ ତାଙ୍କଠାରୁ ଡାକରା ଆସିଲା। ସେ ଏତେ ତଳ ଶ୍ରେଣୀର ପିଲାଙ୍କୁ ଚିହ୍ନିବାର ପ୍ରଶ୍ନ ଇ ନ ଥିଲା। ଭଲ ପିଲାତ ନିଶ୍ଚୟ ନଥିଲି ବା ଏମ.କେ.ସି. ହେଡମାଷ୍ଟରଙ୍କ ଦୃଷ୍ଟି ଆକର୍ଷଣ କଲାପରି ବଦ୍‌ମାସ ବି ନଥିଲି। ସେତେବେଳେ ଲାଗୁଥିଲା, ଏ ମରଣର ଡାକରା କାହିଁକି ? ପ୍ରାୟ ଗୋଟିଏ ପିରିଅଡ୍ ବାହାରେ ଅପେକ୍ଷା କଲା ପରେ ଭିତରକୁ ଯିବାକୁ ଅନୁମତି ମିଳିଲା। ତାଙ୍କ ପାଇଁ ଦୁଆର ମୁହଁରେ ଆଣ୍ଠୁ ମାଡ଼ି ନମସ୍କାର କଲି। ସେତେବେଳେକୁ ଝାଳରେ ଓଦା ହୋଇ ଯାଇଥିବା କ୍ଲାସ ଟିଚରଙ୍କ

କାଗଜଟିକୁ ଟେବୁଲ ଉପରେ ଥୋଇଦେଲି । ସେ ପଚାରିଲେ, ତତେ ମହତାବବାବୁ ଚିହ୍ନିନ୍ତି କିରେ ?

ହରେକୃଷ୍ଣ ମହତାବ । ସାଧାରଣଜ୍ଞାନ ବହିରେ ପଢି ମନେରଖି ମାର୍କ ପାଉଥିବା ପରି ନାଆଁ । ସିଏ କାହିଁ ମୋତେ ଚିହ୍ନିବେ ? ଉତ୍ତର ଦେବାକୁ ସାହସ କୁଳେଇ ନଥାଏ । ମୁଣ୍ଡ ହଲାଇ ମନାକଲି । ସେ ପାଖକୁ ଡାକିଲେ । ଟେବୁଲ ଉପରେ ବେତ ଥୁଆ ହୋଇଥାଏ । ସେ ବସିଥିବା ଅବସ୍ଥାରେ ତାଙ୍କଠାରୁ ମୋ ଉଚ୍ଚତା କମ୍ ଥିଲା । ସେତେବେଳେ ଆଞ୍ଜୁଳି ଦେଖେଇ ମାଡ ଖାଇବା ବିଧି ଥିଲା । ତେଣୁ ମୁଁ ସେଇ ମୁଦ୍ରାରେ ତାଙ୍କ ପାଖକୁ ଗଲି । ସେ ବେତ ଉଠାଇଲେ । ମୋ ଛାତି ଦୁଲ୍ ଦୁଲ୍ ହେଉଥାଏ । କିନ୍ତୁ ସେ ବେତ ତଳୁ ପୋଷ୍ଟକାର୍ଡ ଚିଠି ଖଣ୍ଡିଏ କାଢ଼ି ମୋ ଆଞ୍ଜୁଳାରେ ଥୋଇ ଦେଲେ ଓ ମୁଣ୍ଡକୁ ଟିକେ ଆଉଁସି କହିଲେ, ‘‘ଗୀତ ଲେଖିଲେ ଲେଖିବୁ ପଛେ, ପାଠ ପଢୁଥିବୁ ।’’ ଭାଗ୍ୟ, ଗୀତ ବି ଲେଖିପାରିଲିନି କି ପାଠ ବି ପଢ଼ିପାରିଲିନି ।

ଚିଠି ଖଣ୍ଡିକ ଆସିଥିଲା ବମ୍ବେ ରାଜଭବନ ଗଭର୍ଣ୍ଣରଙ୍କ ଠାରୁ ! ମହାରାଷ୍ଟ୍ର ସ୍ୱତନ୍ତ୍ର ରାଜ୍ୟ ହୋଇ ନଥାଏ । ରାଜଭବନର ସ୍ୱତନ୍ତ୍ର ରକମ ପୋଷ୍ଟକାର୍ଡ । ମହତାବଜୀ ମୋ ପରି ଅକିଞ୍ଚନକୁ ଚିଠି ଦେଇଥିବା କଥା ଯିଏ ଅବିଶ୍ୱାସ କରେ ମୁଁ ତାକୁ ନେଇ ଚିଠିଟିକୁ ଦେଖାଏ । ନାକ ପୋଛୁ ପୋଛୁ ନୋଥ ନୋଇକ ଘୋରି ହେବା ପରି ସେ ଚିଠିଟି ସରିଗଲା । ଏମିତି ଏମିତି । ଧରୁ ଧରୁ ପ୍ରଜାପତିର ଡେଣାରୁ ରଙ୍ଗ ଝଡି ଯାଉଥିବା ପରି ।

ମହତାବଜୀଙ୍କ ମୃତ୍ୟୁ ସମ୍ବାଦ ମୁଁ ଟେଲିଫୋନ ଯୋଗେ ପାଇଥିଲି ରାଉରକେଲା ପ୍ରଜାତନ୍ତ୍ର ପ୍ରତିନିଧିଙ୍କଠାରୁ । ପୁଣି ଥରେ କବିତା ଲେଖିଥିଲି । ସେଥିରେ ତାଙ୍କୁ ମୁଁ କହିଥିଲି, ଠିକ୍ ଆମ ସାକ୍ଷୀଗୋପାଳଙ୍କ ପ୍ରତୀକ ପରି । ପଦୁଟିଏ ଥିଲା; ନୂପୁର ରୁଣୁଝୁଣୁ ଶୁଣି ତୁ ଚାଲୁଥିବୁ/ପଥର ଦେଖିବାକୁ ପଛକୁ ନ ଚାହିଁବୁ ।

ସମୁଦାୟ ଏକ ଦୁଇଟି କବିତାର ଖୁଣ୍ଟ ପୋତି ମୁଁ ତାଙ୍କୁ ଚିହ୍ନିଛି । ବାହାରକୁ ଯିବାକୁ ଇଚ୍ଛା କରିନି ବା ଉପାୟ ବି ନାହିଁ ।

ସତୁରି ଦଶକ ବେଳକୁ ମୁଁ ପ୍ରାୟ ରୀତିମତ ଲେଖାଲେଖି କଲିଣି । ସେ ମୋତେ ଭଲ ମନ୍ଦ କେମିତି ଚିହ୍ନିଥିଲେ କେଜାଣି, ମାତ୍ର ତାଙ୍କଠାରୁ

ମୁଁ ଯଥେଷ୍ଟ ଶ୍ରଦ୍ଧା ପାଇଛି । ସେ କେତେବେଳେ କେମିତି ରାଉରକେଲା ଆସନ୍ତି । ମୁଁ ଭୁବନେଶ୍ୱର ଗଲେ ନିଶ୍ଚୟ ତାଙ୍କୁ ଏକାମ୍ର ନିବାସରେ ଥରୁଟିଏ ହେଲେ ଭେଟେ । ନେତାମାନଙ୍କ ଭଳି ଖାଲି 'ନମସ୍କାର-ଆଉ କ'ଣ ?' କହି ସେ ବିଦା କରିଦିଅନ୍ତି ନାହିଁ। ଶୁଣନ୍ତି, ନିଜେ ବି କହନ୍ତି । ମୁଁ କହିଥିବା ଅନେକ ଅଭିଯୋଗ 'ଗାଁ ମଜଲିସ୍'ରେ ଦେଖିଛି । 'ଗାଁ ମଜଲିସ୍'କୁ ସରକାର ବା ଅଧିକାରୀମାନେ କେୟାର କରୁଥିବା କଥା ଅନେକ ଜାଣିଥିବେ ।

ତାଙ୍କ କଥା କହିବା ଢଙ୍ଗ ବିଚିତ୍ର । ଅଳ୍ପ କହନ୍ତି, ମୂଳ ଛୁଆଁଇ କହନ୍ତି । ଥରେ ସେ ପଚାରିଲେ, "ହଇ ହୋ, ତୁମେ ତ ଲେଖାଲେଖି କରୁଛ । ଲେଖକ ନିଜ ହାତରେ ନିଜ ପାଇଁ କୋଉ ବିପତ୍ତିଟି ସୃଷ୍ଟି କରେ, କହିଲ ?" ଏପରି ସର୍ବୋତ୍କୃଷ୍ଟ ପ୍ରଶ୍ନର ମୁଁ କି ବା ଉତ୍ତର ଦେଇପାରିଥା'ନ୍ତି ? ଚୁପ୍ ରହିଲି । ସେ ବୁଝାଇଦେଲେ, ବହୁଳ ବିଶେଷଣ ପ୍ରୟୋଗ ହେଉଛି ଲେଖକର ବିପତ୍ତି ।

ଏହା ସେ ସାଧାରଣତଃ କହିଲେ । କିନ୍ତୁ ତା' ପରେ ଯେତେବେଳେ ଲେଖିବାକୁ ବସେ, ମନରେ ତାଙ୍କ କଥାଟି ଘାରେ ।

ଏକାମ୍ର ନିବାସ । ଉଏଟିଙ୍ଗ ହଲ୍‌ରେ ବହୁତ ଲୋକ । ପ୍ରାୟ ସମସ୍ତେ ବଡବଡିଆ । କିନ୍ତୁ ମୋ ପାଇଁ ଡାକରା ଆସିଲା । ଷ୍ଟଡିରେ ବିରାଟ କାଠର ଟେବୁଲ । ସେଥିରୁ ପ୍ରାୟ ପା' ଭାଗ ଚଟିବହିରେ ଭରିଥାଏ । ସେଗୁଡ଼ିକ ହେଲା, ହାରମୋମନିଅମ୍ ବଜାଇ ଯେଉଁ ବହି ହାଟ ବଜାର ବା ବସ୍‌ଷ୍ଟାଣ୍ଡରେ ବିକ୍ରି କରାଯାଏ । ମନକୁ କ'ଣ ଆସିଲା, ପଚାରିଦେଲି, "ଏ ସବୁ ବହି କ'ଣ ହେବ ?" ତାଙ୍କ ଉତ୍ତର ଥିଲା ସରଳ । ଅଥଚ ସେଇଥିରେ ଥିଲା ଓଡ଼ିଆ କବିତାର ଏକ ପ୍ରକାର ଦୈନ୍ୟ ଅନୁଶୀଳନ । ଷାଠିଏ ଦଶକ ଠାରୁ ଓଡ଼ିଆ ପାଠକ ମନକୁ ପ୍ରସ୍ତୁତ ନ କରାଇ ଯେପରି ଉଦ୍‌ଭଟ କବିତାମାନ ସୃଷ୍ଟି କରାଗଲା ଏବଂ ସେମିତିକା ଅବୋଧ କବିତା ଲେଖିବାକୁ ସମସ୍ତେ ଯେମିତି ପ୍ରତିଯୋଗିତା କଲେ, ସେଥିଯୋଗୁ ପାଠକର ବୋଧଗମ୍ୟତା ପାଇଁ କାବ୍ୟଧାରାର ସାବଲୀଳତା ସଂପୂର୍ଣ୍ଣ ଭାବେ ବ୍ୟାହତ ହୋଇଗଲା । ଏହିପରି ଚଟି ବହି ଗୁଡିକ, କବିତା କାହାକୁ କହନ୍ତି ସେତିକି ଚିହ୍ନେଇବାକୁ କିଛି କିଛି ଦାୟିତ୍ୱ ତୁଲାଇଛନ୍ତି । ଏ କଥା ଶୁଣିଲା ପରେ ସଚରାଚର ଓଡ଼ିଆ ପାଠକଙ୍କ ଅଭିଯୋଗ (ଯଥା: ସେମାନେ କାହିଁକି ପତ୍ରିକାର ସମୁଦାୟ କବିତା

ଅଂଶ ଓଲଟାଇ ଦିଅନ୍ତି) ବୁଝିବାକୁ କଷ୍ଟ ହେଲାନାହିଁ।

'ପ୍ରଜାତନ୍ତ୍ର'ରେ ମୁଁ ରୀତିମତ ସ୍ତମ୍ଭ ଲେଖୁଥାଏ। ମହତାବଜୀ ସଂପାଦକ। ଆଙ୍ଗୁଠି ଧରେଇ ପିଲାଙ୍କୁ ବାଟ ଦେଖାଇଲା ପରି ମୁରବୀ ସିଏ। କେତେବେଳେ କେମିତି ସାଟାଏର ଲେଖିବା ଅଭ୍ୟାସ ମୋର ମୂଳରୁ ଥାଏ। ସେ ପଚାରିଲେ ଥରେ, "ତୁମେ ରାଜେନ୍ଦ୍ର ପୁରୀଙ୍କ ସ୍ତମ୍ଭ ପଢ଼ କି?" ହଁ ମାରିଲି। ସେଇଆକୁ ଓଡ଼ିଆରେ ଲେଖିବାକୁ ସେ ମୋତେ ପରାମର୍ଶ ଦିଅନ୍ତେ, ମୁଁ ନିଜ ଅଜ୍ଞତା ଯୋଗୁ କପିରାଇଟ୍ ଇତ୍ୟାଦି ବିଷୟ ଭାବି, ଅନୁମତି କଥା କହିଲି। ସେ ଚୁପ୍ ରହିଲେ। ମୁଁ ଆଶ୍ଚର୍ଯ୍ୟ ହେବା ପରି କେତେ ଦିନ ପରେ ରାଜେନ୍ଦ୍ର ପୁରୀଙ୍କ ଠାରୁ ଖଣ୍ଡିଏ ଚିଠି ପାଇଲି। "ହିନ୍ଦୁସ୍ଥାନ ଟାଇମ୍ସ୍ ବା ଅନ୍ୟତ୍ର ଯେଉଁ ଖବରକାଗଜରେ ମୋର ସ୍ତମ୍ଭ ପ୍ରକାଶ ହେଉଥିବ ତାହା ଆପଣ ଓଡ଼ିଆ ଦୈନିକ 'ପ୍ରଜାତନ୍ତ୍ର' ପାଇଁ ଭାଷାନ୍ତର କରିବାକୁ ମୁଁ ଆପଣଙ୍କୁ ଅନୁମତି ଦେଲି।"

ଏଇ ଲେଖାଲେଖି କାରବାର ଯୋଗୁଁ ଥରେ ମୁଁ ରୀତିମତ ଗୋଟାଏ ସଙ୍କଟରେ ପଡ଼ିଥିଲି। ବୟସ ବି ପାକଳ ହୋଇ ନଥିଲା; ହୁଏତ ସ୍ତମ୍ଭ ଲେଖା ସବୁଦିନ ପାଇଁ ଛାଡି ଦେଇଥା'ନ୍ତି। 'ଯୁଗକୁ ଯୁଗ ଏହିମତେ' ଗୋଟିଏ ସାଟାଏର୍। 'ପ୍ରଜାତନ୍ତ୍ର' ପ୍ରକାଶ କରିଥାନ୍ତି। ଗୋଟିଏ ଗୋଷ୍ଠୀର ସରକାରୀ କର୍ମଚାରୀ ରାଜ୍ୟବ୍ୟାପୀ ଆନ୍ଦୋଳନ କରୁଥା'ନ୍ତି। ସେତିକିବେଳେ ସେ ଗପଟି ବାହାରିପଡିଲା। ପାଠକୀୟ ପ୍ରଶଂସାର ଚିଠି ବେଶୀରୁ ବେଶୀ ଚାରି ପାଞ୍ଚ ଖଣ୍ଡ ପାଇଥିବି କି ନା, କୁତ୍ସିତ ଭାଷାରେ ଗାଳିଗୁଲଜ ଲେଖା ପତ୍ରସଂଖ୍ୟା ଶହେରୁ କମ୍ ନ ଥିଲା। ତା' ସାଙ୍ଗକୁ ଟେଲିଫୋନ୍‌ରେ ବେନାମୀ ଗାଳି। ଘରେ ଝିଅବୋହୂ ସତ ଫୋନ୍ ଉଠାଇବାକୁ ବି ଡରିଲେ। ମହତାବଜୀଙ୍କ ପାଖକୁ ସବୁଠୁଁ ଅସଭ୍ୟ ଭାବେ ଲେଖା ଯାଇଥିବା ଦୁଇଟି ଚିଠି ଓ ନିଜ ଦୁଃଖ ଜଣାଇ ଚିଠିଟିଏ ଦେଲି। ଅଭିମାନରେ କହିଥିଲି, ଆଉ ଲେଖିବି ନାହିଁ।

ତାଙ୍କ ଉତ୍ତର ଥିଲା ସଂକ୍ଷିପ୍ତ। ତାହା ପୁଣି ସ୍ବତନ୍ତ୍ର କାଗଜରେ ନୁହେଁ। ପଠାଇଥିବା ଚିଠି ଦୁଇଟି ଫେରି ଆସିଥାଏ। ଗୋଟିକର ମାର୍ଜିନରେ ସେ ଲେଖିଥାନ୍ତି। ଆଇନା ଆବିଷ୍କାର ନ ହୋଇଥିଲେ ସୁନ୍ଦରୀ ପ୍ରତିଯୋଗିତା ହୋଇନଥାନ୍ତା। ଏମିତି କି, ପୃଥିବୀରେ ଅନେକ ଯୁଦ୍ଧ ବି ହୋଇ ନଥାନ୍ତା।

ସତ ଲେଖି ଏତେ ଲୋକଙ୍କୁ ଆଘାତ ଦେଇପାରିଛ, ତଥାପି ଡରୁଛ। ମିଛ ଲେଖିଥିଲେ ବୋଧେ ଆତ୍ମହତ୍ୟା କରିସାରନ୍ତଣି। ଲେଖ। ମୁଁ ଅଛି। ଏହା ପାଇଲା ପରେ ମୋତେ ସତକୁ ସତ ଲାଗୁଥାଏ ଯେମିତି ମୋ ପାଖରେ ସେ ଅଛନ୍ତି ଚାରିଶହ କିଲୋମିଟର ଦୂର କିଛି ନୁହେଁ ଯେମିତି।

ଜନନାୟକ ଓ ରାଜନୀତିକ ବ୍ୟକ୍ତିଙ୍କ ଭିତରେ ପାର୍ଥକ୍ୟ ଦେଖାଇବାକୁ କୁହାଯାଏ ଯେ ଯିଏ ଯେତେ ଅଧିକ ନିଜର ଅବର୍ତ୍ତମାନକୁ ଅନୁମାନ କରି ମାର୍ଗ ଦର୍ଶନ ଦେଇପାରେ ସେ ଜନନାୟକ ଏବଂ ଆଉ ଯିଏ ବର୍ତ୍ତମାନର ସବୁ ଆଶ୍ୱସ୍ତି ସତ୍ତ୍ୱେ ଆସନ୍ତା କାଲି ପାଇଁ ବି ଅନିଶ୍ଚିତ ହୋଇ ରହିଥାଏ ସେ ରାଜନୀତିକ୍। ସୁନ୍ଦରଗଡ ଜିଲ୍ଲା, ବିରସାମୁଣ୍ଡା, କଂଗ୍ରେସ ସରକାର ଓ ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚା ବର୍ତ୍ତମାନର ହଟ ଟପିକ୍।

ତାରିଖ ଆଦି ମନେ ନାହିଁ। ୧୯୮୧ର କଥା। ଏକାମ୍ର ନିବାସ। ସେତେବେଳେର ରାଉରକେଲା ବିଧାୟକ ଗୁରୁପଦ ନନ୍ଦ ବି ଥାଆନ୍ତି। ଛୋଟନାଗପୁର ଇତିହାସ, ଗଡ଼ଜାତ ମିଶ୍ରଣ ବିଷୟରେ ଅଳ୍ପ କିଛି କହି ମହତାବଜୀ ପଚାରିଲେ, "ଆଚ୍ଛା କହିଲ, ଆଦିବାସୀମାନଙ୍କ ସହିତ ତୁମମାନଙ୍କ ସାମାଜିକ ସଂପର୍କ କିପରି?" ସ୍ୱାଭାବିକ ଉତ୍ତର ଥିଲା; ଭଲ। ମହତାବଜୀ ଜେରା କରିଚାଲିଥାନ୍ତି। ଗୁରୁପଦବାବୁ ଉତ୍ତର ଦେଉଥାନ୍ତି। ଜିଲ୍ଲା କଂଗ୍ରେସ, ନଗର କଂଗ୍ରେସରେ କେତେ ଆଦିବାସୀ କର୍ମକର୍ତ୍ତା ଅଛନ୍ତି, ସେମାନଙ୍କୁ କିପରି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦିଆଯାଇଛି ଇତ୍ୟାଦି। ମହତାବଜୀ ମୂଳ ଛୁଇଁ ପ୍ରଶ୍ନ ପଚାରନ୍ତି ବୋଲି ଆଗରୁ କହିଛି।

"ଛାଡ଼ ହୋ, ସେଗୁଡାକ ସବୁ ଭୋଟ କଥା। କହିଲ, କେଇଜଣ ଆଦିବାସୀ ଲୋକ ଛୁଆପିଲା ଧରି ତୁମ ଘରକୁ ସନ୍ଧ୍ୟାବେଳେ ବୁଲିବାକୁ ଆସନ୍ତି ବା ତୁମେ ପିଲାଛୁଆ ଧରି କେଇଜଣଙ୍କ ଘରକୁ ଯାଅ? ଚା' ଜଳଖିଆ କରାଅ ବା କର।

ଅପ୍ରିୟ ସତକୁ ହାବୁଡି ଯାଇଥିବା ଯୋଗୁ, ଉତ୍ତର ନଥିଲା।

ବିରସା ମୁଣ୍ଡାଙ୍କ ବିଷୟରେ ବହୁତ କଥା ସେ କହିଲେ। ଭାବଗତ ସମନ୍ୱୟ ସ୍ଥାପନ କରିବାକୁ ଏବେଠାରୁ ଆଗୁସାର ନହେଲେ ଭବିଷ୍ୟତକୁ ବହୁତ ବିପଦ ଅଛି। ତାଙ୍କ ପ୍ରତିମୂର୍ତ୍ତିଟିଏ ରାଉରକେଲାରେ କରୁନାହଁ କାହିଁକି? ଗୋପବନ୍ଧୁ, ମଧୁସୂଦନଙ୍କ ପ୍ରତିମୂର୍ତ୍ତିକୁ ଆଦିବାସୀମାନେ ତୁମ ସାଙ୍ଗରେ ମିଶି

ପୂଜା କରିବେ ବୋଲି ତୁମେମାନେ ଆଶା କରିବ, ଅଥଚ ସେମାନଙ୍କପୂଜ୍ୟ ପୁରୁଷଙ୍କୁ ତୁମେ ପୂଜା କରିବନି ? ଜାତି ଜାତି ଭିତରେ ମିଳନ ଏଡ଼େ ସହଜ କି ?

ସେତେବେଳେ ବି ମୁଖ୍ୟମନ୍ତ୍ରୀ ଥା'ନ୍ତି ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ। ଅତି ଆଦରରେ ସେ ଏହି ପ୍ରସ୍ତାବଟିକୁ ଗ୍ରହଣ କଲେ। ବିରସା ମୁଣ୍ଡାଙ୍କ ପ୍ରତିମୂର୍ତ୍ତି ନାମ୍ କା ୱାସ୍ତେ 'ବେସରକାରୀ' ଭାବେ ନିର୍ମାଣ ଓ ସ୍ଥାପନା କରାଯାଇଥିଲେ ମଧ୍ୟ ମୁଖ୍ୟମନ୍ତ୍ରୀଙ୍କ ଆଗ୍ରହ ଯୋଗୁ ସବୁ କାମ ପ୍ରାୟ ସରକାରୀ ଭାବେ ହୋଇଥିଲା କହିଲେ ଚଳେ। ମୋଟେ ବାରବର୍ଷ ହୋଇଛି। ରାଜନୀତି ପଶିଲା। ଅର୍ଥ-ଅନର୍ଥର ଲୁଚକାଳି ଲାଗିଲା। ଆଦିବାସୀ-ଅଣଆଦିବାସୀମାନଙ୍କ ଭିତରେ ମିଳନ ବା ସମନ୍ୱୟ ଆସିବ କ'ଣ, କଂଗ୍ରେସର ସ୍ଥାନୀୟ ଗୋଷ୍ଠୀ ବିବାଦ ଯୋଗୁ ବିରସା ମୁଣ୍ଡା ନିଜେ ଆଜି ମଧ୍ୟ ବିପତ୍ତିର ସାମ୍ନାରେ। ଦୁଇଗୋଷ୍ଠୀ ଆଦିବାସୀ ରାଜନୈତିକ ଢାଲ ତରୁଆଲ ଧରି ଏପରି ଲଢୁଛନ୍ତି ଯେ ବିରସାମୁଣ୍ଡାଙ୍କ ଜନ୍ମ ଉତ୍ସବ ଏ ବର୍ଷ ପାଳନ ହୋଇପାରିନାହିଁ।

ଏ ଧରାଧାମରେ କେତେକ ଲୋକ ଉତ୍ତମ କାର୍ଯ୍ୟ କରି ନିଜକୁ ଭଲଲୋକ ଭାବେ ପ୍ରତିପାଦିତ କରାନ୍ତି ତ ଆଉ କେତେକ ନିଜେ ଭଲ ଲୋକ ହୋଇଥିବାରୁ, ସେମାନେ ଯାହା କରୁଥିବେ ସବୁ ଉତ୍ତମ ହେଉଥିବ ବୋଲି ଧାରଣା କରିବସନ୍ତି। ଉଭୟ ମନ୍ତବ୍ୟ ସତ୍ୟ ନିରୀକ୍ଷଣର ନିକଟବର୍ତ୍ତୀ ନୁହନ୍ତି। ଏଥିଯୋଗୁ ବରଂ ବ୍ୟକ୍ତିଠାରୁ ତା'ର ପ୍ରତ୍ୟେକ କାର୍ଯ୍ୟ ପୃଥକ ହୋଇପଡ଼େ। ଅନ୍ଧର ହାତୀ ଦେଖା 'ବିଶ୍ୱାସ' ସହ ମୁଁ ଏତିକି କହିପାରେ ଯେ ପୂଜ୍ୟ ମହତାବଜୀ ମୋ ପାଇଁ ପ୍ରହେଳିକାମୟୀ ଆକର୍ଷଣର ଏକ ଅଦ୍‌ଭୁତ ବ୍ୟକ୍ତିତ୍ୱ। ଅଙ୍ଗ ହେଉ ପଛେ ଯାହା ମୁଁ ଅଙ୍ଗେ ଅଙ୍ଗେ ଛୁଇଁଛି, ପ୍ରଭାବିତ ହୋଇଛି।

ଏ-୫୭, ସେକ୍ଟର-୩
ରାଉରକେଲା-୭୬୯୦୦୨

# ଡକ୍ଟର ମହତାବଙ୍କ ସହିତ ମୋ' ଅନୁଭୂତି

ବିଶ୍ୱଭୂଷଣ ହରିଚନ୍ଦନ

ବରେଣ୍ୟ ଜନନାୟକ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାର ରାଜନୀତି, ସଂସ୍କୃତି, ସାହିତ୍ୟ, ଇତିହାସ ଓ ସମାଜସେବା କ୍ଷେତ୍ରରେ ରାଜ୍ୟର ଜନଜୀବନକୁ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ପ୍ରଭାବିତ କରି ରଖିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ସ୍ୱାଧୀନତା ସଂଗ୍ରାମର ସେ ପ୍ରଖ୍ୟାତ ଯୋଦ୍ଧା। ଓଡ଼ିଶାର ସାମଗ୍ରିକ ବିକାଶ କ୍ଷେତ୍ରରେ ରାଜ୍ୟର ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ ଜନନେତା ହିସାବରେ ଯେଉଁ କାର୍ଯ୍ୟ ସବୁ କରି ଯାଇଛନ୍ତି, ସେଥିପାଇଁ ସେ ଚିରସ୍ମରଣୀୟ ହୋଇ ରହିବେ। ଉତ୍କଳ ଜନନୀର ସେହି ବରପୁତ୍ର ମହତାବଜୀଙ୍କ ସହିତ କେତେକ ସାକ୍ଷାତ, ଆଲୋଚନା ଓ ଅନୁଭୂତି ସଂପର୍କରେ ଉଲ୍ଲେଖ କରିବା ମୋର ଉଦ୍ଦେଶ୍ୟ।

ଲୋକନାୟକ ଜୟପ୍ରକାଶଙ୍କର ସଂପୂର୍ଣ୍ଣ କ୍ରାନ୍ତି ଉପରେ ସମଗ୍ର ଦେଶରେ ଆନ୍ଦୋଳନ ଚାଲିଥାଏ ଓ ଏକ ବୈପ୍ଳବିକ ବାତାବରଣ ସବୁଆଡେ ସୃଷ୍ଟି ହୋଇଥାଏ। ସଂପୂର୍ଣ୍ଣ କ୍ରାନ୍ତି ସମ୍ଭବ କି ନାହିଁ, ତାକୁ ବିଚାର ନକରି ଗଣତନ୍ତ୍ରର ସୁରକ୍ଷା, ବ୍ୟକ୍ତି-ସ୍ୱାଧୀନତା ଓ କଥା କହିବାର ସ୍ୱାଧୀନତା ଉପରେ ଖୁବ୍ ଜୋରରେ ଆଲୋଚନା ଚାଲିଥାଏ। ସେ ଆଲୋଚନାର ଏକ ମୁଖ୍ୟକ୍ଷେତ୍ର ହୋଇ ପଡିଥାଏ ପ୍ରଜାତନ୍ତ୍ର ପରିସର। ସେହି ଅବସରରେ ଅନେକଥର ମୁଁ ସେଠାକୁ ଯିବା ଆସିବା କରିଛି। ସେଠାରେ ଦେଶର ଓ ରାଜ୍ୟର ଭବିଷ୍ୟତ ରାଜନୀତି ତଥା ଗଣତନ୍ତ୍ରର ସୁରକ୍ଷା ସମ୍ପର୍କରେ ମହତାବଙ୍କ ସହ ଆଲୋଚନା ହୁଏ। ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କର ଶାସନର ଢଙ୍ଗ ଓ କାର୍ଯ୍ୟପ୍ରଣାଳୀ ଉପରେ ମନ୍ତବ୍ୟ ଦେଇ ମହତାବଜୀ କହନ୍ତି ଶାସନ ଏଭଳି ଭାବରେ ଚାଲିଲେ ଶେଷରେ ସମଗ୍ର ଦେଶ ଏକଛତ୍ରବାଦର ଶିକାର ହେବ। ସ୍ୱାଧୀନଚେତା ବ୍ୟକ୍ତି, ଯୁବକ ଓ ବୁଦ୍ଧିଜୀବୀମାନେ ଏ ସମୟରେ ଅଣ୍ଟାଭିଡ଼ି ନ ବାହାରିଲେ

ଗଣତନ୍ତ୍ର ବିପନ୍ନ ହୋଇଯିବ ବୋଲି ସତର୍କ କରିଦେବା ସହିତ ଏହା ବିରୁଦ୍ଧରେ ଲଢ଼େଇ କରିବା ପାଇଁ ସେ ଆମ ସମସ୍ତଙ୍କୁ ଉତ୍ସାହ ପ୍ରଦାନ କରନ୍ତି। ତାପରେ ୧୯୭୫ ମସିହା ଜୁନ୍ ୨୫ ତାରିଖରେ ଦେଶରେ ଆଭ୍ୟନ୍ତରୀଣ ଜରୁରୀ ଅବସ୍ଥା ଜାରି କରାଗଲା ଓ ସେହି ରାତିରେ ଜୟ ପ୍ରକାଶଜୀଙ୍କ ସହିତ ଦେଶର ବହୁ ପ୍ରମୁଖ ନେତାଙ୍କୁ ଗିରଫ କରି ଜେଲ୍‌ଖାନାକୁ ନିଆଗଲା। ତା ପରଦିନ ସକାଳେ ମୁଁ କଟକର ଶ୍ରୀ ସଂଗ୍ରାମ ମହାପାତ୍ର ଓ ଆଉ କେତେକ ବନ୍ଧୁ ଯାଇ ମହତାବଜୀଙ୍କୁ ଭେଟିଲୁ ଓ ଏ ପରିସ୍ଥିତିରେ କ'ଣ କରାଯିବ ତାଙ୍କର ପରାମର୍ଶ ନେଲୁ। ଦେଶର ଗଣତନ୍ତ୍ର ଓ ବ୍ୟକ୍ତି ସ୍ୱାଧୀନତାର ଚରମ ବିପର୍ଯ୍ୟୟର ସମୟ ଆସିଗଲା ବୋଲି ମହତାବଜୀ କହିଲେ ଓ ଏହା ବିରୁଦ୍ଧରେ କିଭଳି ଲଢ଼େଇ କରାଯିବ, ତା'ର ପନ୍ଥା ନିରୂପଣ କରିବାକୁ ସଂଧ୍ୟାରେ ପୁଣି ଆଲୋଚନା କରିବାକୁ ପ୍ରସ୍ତାବ ଦେଲେ। ସେହିଦିନ ଉପରବେଳା ପ୍ରଥମେ ମନମୋହନ ଚୌଧୁରୀଙ୍କ କଟକ ସନ୍‌ସାଇନ ପଡ଼ିଆ ପାଖ ଘରେ ନବବାବୁ, ମନମୋହନ ବାବୁ, ବିଶ୍ୱନାଥ ପଣ୍ଡିତ, ସଂଗ୍ରାମ ମହାପାତ୍ର ଓ ଆହୁରି ଅନେକ ବ୍ୟକ୍ତି ଓ ରାଜନୈତିକ ନେତା, ଯାହାଙ୍କ ନାମ ଆଜି ମନେ ପଡୁନାହିଁ, ଏକତ୍ରିତ ହୋଇ ଜରୁରୀ ଅବସ୍ଥା ବିରୁଦ୍ଧରେ ଜନଚେତନା ଜାଗ୍ରତ କରିବା ପାଇଁ ନିଷ୍ପତ୍ତି ନେଲେ। ସେଠାରୁ ପ୍ରାୟ ଅଧିକାଂଶ ଲୋକ ଓ ନେତୃମଣ୍ଡଳୀ ଆମର ପୂର୍ବ ଯୋଜନା ଅନୁସାରେ ବିହାରୀବାଗ ଚାଲିଲୁ। ସେଠାରେ ଉପସ୍ଥିତ ଅନ୍ୟମାନଙ୍କ ସହିତ ଏକ ବଡ଼ ଧରଣର ବୈଠକ ବସିଲା, ଯେଉଁଥିରେ ସମାଜର ସବୁକ୍ଷେତ୍ରର ନେତାମାନେ ଯୋଗ ଦେଇଥିଲେ। ଜରୁରୀ ଅବସ୍ଥାକୁ ସବୁମନ୍ତେ ବିରୋଧ କରିବା ପାଇଁ ବିଭିନ୍ନ ପନ୍ଥା ନିର୍ଦ୍ଧାରଣ କରାଗଲା। ନୀରବ ରହିଲେ ଦେଶର ସର୍ବନାଶ ହୋଇଯିବ ବୋଲି ମହତାବଜୀ ସମସ୍ତଙ୍କୁ ସତର୍କ କରି ଦେଇଥିଲେ। ସେହିଦିନଠାରୁ ପ୍ରତିଦିନ 'ପ୍ରଜାତନ୍ତ୍ର' ପରିସରଠାରେ ଆମେ ସବୁ ଏକତ୍ରିତ ହେବୁ ଓ ସଂଗ୍ରାମ ଚାଲୁ ରହିବ ବୋଲି ସ୍ଥିର ହେଲା ଓ ତା'ପରେ ସଂଗ୍ରାମ ମହାପାତ୍ର ଅନ୍ୟ କେତେକ ଯୁବକ ଗୌରୀଶଙ୍କର ପାର୍କଠାରେ ଜରୁରୀ ଅବସ୍ଥା ବିରୁଦ୍ଧରେ ଭାଷଣ ଦେଇ ଗିରଫ ହେଲେ। ମୋର ଆଜି ବି ସ୍ପଷ୍ଟ ମନେ ଅଛି ତା ପରଦିନ ଅନ୍ୟବନ୍ଧୁମାନଙ୍କ ସହିତ ସଂଧ୍ୟା ପ୍ରାୟ ୫ଟା କିମ୍ବା ୬ଟାରେ 'ପ୍ରଜାତନ୍ତ୍ର'ରେ ଆମେ ପହଞ୍ଚି ଉପରକୁ ଉଠି ବୁଝିଲୁ ଯେ ମହତାବଜୀ ଆଉ ପଟେ ଓହ୍ଲାଇ କରି ଭୁବନେଶ୍ୱର

ଫେରିଗଲେ। ତା ପରଦିନ ସକାଳେ ଜାଣିବାକୁ ପାଇଲୁ ଯେ ସେ ଗିରଫ ହୋଇଛନ୍ତି। ତା'ପରେ ଆନ୍ଦୋଳନ କିଭଳି ଚାଲିବ, ବିଚାର କରିବା ଭିତରେ ମୁଁ ଓ ମୋର ଅନ୍ୟ ବନ୍ଧୁମାନେ ସବୁ ଗିରଫ ହୋଇ ଜେଲ୍‌ଖାନାକୁ ଗଲୁ।

୧୯୭୯ ମସିହାରେ ଆହୁରି ଏକ ଅନୁଭୂତି। ଓଡ଼ିଶାର ସାମରିକ ପରମ୍ପରା ଉପରେ ଭୁବନେଶ୍ୱରରେ ଏକ ରାଜ୍ୟସ୍ତରୀୟ ଆଲୋଚନାଚକ୍ର ଓ ପାଇକ ଆଖଡ଼ା ସମାରୋହ କରିବା ପାଇଁ ମୁଁ ମନସ୍ଥ କରିଥିଲି। ସେତେବେଳେ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ମୋ ଅଧୀନରେ ଥାଏ। "ଏକାମ୍ର ନିବାସ"ରେ ମହତାବଜୀଙ୍କ ସହିତ ଆଲୋଚନା କରିବାକୁ ମୁଁ ଯାଇଥାଏ। ମୋର ପ୍ରସ୍ତାବ ଶୁଣି ସେ ବହୁତ ଖୁସି ହୋଇଗଲେ ଓ କହିଲେ, "ଏ ବାବଦରେ ତୁମେ ମୋର ସଂପୂର୍ଣ୍ଣ ସହଯୋଗ ପାଇବ।" ଏହା ଫଳରେ ଓଡ଼ିଶାର ଗର୍ବିତ ସାମରିକ ପରଂପରାର ପୁନରୁଦ୍ଧାର କରିବା ସହିତ ଓଡ଼ିଆ ଯୁବକମାନଙ୍କ ମନରେ ନୂତନ ପ୍ରେରଣା ଓ ଆତ୍ମବିଶ୍ୱାସ ସୃଷ୍ଟି କରିହେବ ବୋଲି ମହତାବଜୀ କହିଥିଲେ। ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ଶତାଧିକ ପାଇକ ଆଖଡ଼ା ଦଳ ଏ ପ୍ରତିଦ୍ୱନ୍ଦିତାରେ ଯୋଗ ଦେବେ ଓ ରାଜ୍ୟର ସମସ୍ତ ଐତିହାସିକ ଓ ଗବେଷକଙ୍କୁ "ଓଡ଼ିଶାର ସାମରିକ ପରମ୍ପରା" ଶୀର୍ଷକ ଆଲୋଚନାଚକ୍ରରେ ଯୋଗ ଦେବାକୁ ନିମନ୍ତ୍ରଣ କରାଯିବ ବୋଲି କହିଥିଲି। ଏ ସବୁ କାର୍ଯ୍ୟ କିଭଳି ସୁଚାରୁ ରୂପେ ସଂପାଦିତ ହେବ, ସେ ସଂପର୍କରେ ଆବଶ୍ୟକୀୟ ପରାମର୍ଶ ସେ ଦେଇଥିଲେ। 'ସୂଚନା ଭବନ'ଠାରେ "ଓଡ଼ିଶାର ସାମରିକ ପରମ୍ପରା" ଉପରେ ୩ ଦିନ ଧରି ଏ ଯେଉଁ ଆଲୋଚନାଚକ୍ର ଓ ପ୍ରବନ୍ଧପାଠ, ତାହା ସେଠାରେ ମହତାବଜୀଙ୍କ ଅଧ୍ୟକ୍ଷତାରେ ହେବ ଓ ପ୍ୟାରେଡ୍ ପଡ଼ିଆରେ ପାଇକ ଆଖଡ଼ାର ଶେଷ ଦିନର ଉଦ୍‌ଯାପନୀ ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେବା ପାଇଁ ମୋର ଅନୁରୋଧକୁ ସେ ସାଦରେ ଗ୍ରହଣ କରିଥିଲେ। ସୂଚନା ଭବନଠାରେ ୩ ଦିନ ଧରି ଆଲୋଚନା ଓ ପ୍ରବନ୍ଧ ପାଠ ଚାଲିଲା ଓ ସେଥିରେ ବଛା ଯାଇଥିବା ୨୨ଟି ପ୍ରବନ୍ଧକୁ ମହତାବଜୀ ପୁରସ୍କାର ପ୍ରଦାନ କରିଥିଲେ ଓ ପ୍ୟାରେଡ଼ ପଡ଼ିଆରେ ବିରାଟ ସାଧାରଣ ସଭାରେ ଉଦ୍‌ବୋଧନ ଦେଇଥିଲେ। ସେ ସଭାରେ ବିଭାଗୀୟ ମନ୍ତ୍ରୀ ଭାବରେ ମୁଁ ସଭାପତିତ୍ୱ କରିଥିଲି। ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ ଓ ତତ୍କର ରଥ ଏଥିରେ ସମ୍ମାନିତ ଅତିଥି ଭାବରେ ଯୋଗ ଦେଇଥିଲେ।

ଏ ସମସ୍ତ କାର୍ଯ୍ୟକ୍ରମ ଏଭଳି ହେଲା ଯେ ଓଡ଼ିଶାର ଚାରିଆଡେ ଚହଳ ପଡିଯାଇଥିଲା । ଓଡ଼ିଶାରେ ଏକ ନୂତନ ଜାଗରଣ ସୃଷ୍ଟି ହେଲା ଭଳି ମନେ ହେଲା । ଏ ସମସ୍ତ କାର୍ଯ୍ୟକ୍ରମର ଅପୂର୍ବ ସଫଳତାରେ ଖୁବ୍ ଆନନ୍ଦିତ ହୋଇ ମହତାବଜୀ କହିଥିଲେ ଯେ ଓଡ଼ିଶାର ସାଂସ୍କୃତିକ ଜାଗରଣ କ୍ଷେତ୍ରରେ ଏହା ଏକ ଟାଣୁଆ ପଦକ୍ଷେପ । ଏ ଉତ୍ସବ ସବୁ ବର୍ଷ ନିଶ୍ଚିତ ଭାବେ କରିବା ପାଇଁ ମୋତେ ପରାମର୍ଶ ଦେଇଥିଲେ । ମହତାବଜୀଙ୍କ ହାତରେ ପୁରସ୍କାର ପ୍ରଦାନ କରାଯାଇଥିବା "ଓଡ଼ିଶାର ସାମରିକ ପରମ୍ପରା" ଉପରେ ବିଭିନ୍ନ ଐତିହାସିକ ଦ୍ୱାରା ଲିଖିତ ୨୨ଟି ଯାକ ପ୍ରବନ୍ଧ ସେତେବେଳର ସରକାର ଭାଙ୍ଗିଯବାରୁ, ଆଉ ଛପା ହୋଇ ପାରିଲା ନାହିଁ କିମ୍ବା ସେଭଳି ରାଜ୍ୟସ୍ତରୀୟ ପାଇକ ଆଖଡ଼ା ସମାରୋହ ଆଉ ହୋଇପାରିଲା ନାହିଁ । ରାଜଧାନୀ ଭୁବନେଶ୍ୱର ଦକ୍ଷ ପାଇକମାନଙ୍କର ରଣ କୁହାଟ ଓ ଅସ୍ତ୍ରଶସ୍ତ୍ରର ଝନତକାର ଶବ୍ଦରେ ଆଉ କେବେ ପ୍ରକମ୍ପିତ ହେଲା ନାହିଁ । ରାଜନୈତିକ ସୁବିଧାବାଦର ଘୋଡାଦୌଡ଼ରେ ସବୁ ନିସ୍ତବ୍ଧ ହୋଇଗଲା ।

୧୯୭୭-୭୮ ମସିହାର ଆଉ ଏକ ଅନୁଭୂତି । ସେତେବେଳେ ଓଡ଼ିଶା ସରକାରଙ୍କ ଖାଦ୍ୟ ଓ ଯୋଗାଣ ବିଭାଗ ମୋ ଦାୟିତ୍ୱରେ ଥାଏ । ଏ ବିଭାଗରେ ଏକ ଆମୂଳଚୂଳ ସଂସ୍କାର ଆଣିବା ପାଇଁ ମୁଁ ଏକ ପ୍ରକାର ସଂକଳ୍ପବଦ୍ଧ ହୋଇଥାଏ । ସେଥିପାଇଁ ମହତାବଜୀଙ୍କ ସହିତ କେତେଥର ପରାମର୍ଶ କରିଛି । କାରଣ, ତାଙ୍କୁ ମୁଁ ମୁରବୀ ଭଳି ମାନେ ଓ ଭକ୍ତି କରେ ଓ ସେ ମୋତେ ଖୁବ୍ ଶ୍ରଦ୍ଧା କରନ୍ତି । ସେତେବେଳେ ମୋ ବିଭାଗରେ ହଲର୍ (Rice Huller) ର ପରମିଟ ପାଇଁ ଚାରି ହଜାରରୁ ଉର୍ଦ୍ଧ୍ୱ ଦରଖାସ୍ତ ଚାରି ପାଞ୍ଚ ବର୍ଷ ହେଲା ପଡ଼ି ରହିଥାଏ । ଗୋଟିଏ ପଞ୍ଚାୟତରେ କେତୋଟି ହଲର ବସିବ, ସେ ପଞ୍ଚାୟତର ଧାନ ଉତ୍ପାଦନ କେତେ ଇତ୍ୟାଦି ବିଭିନ୍ନ କଟକଣା ସବୁ ରହିଥିଲା । ସେଥିରେ ପୁଣି ଯୋଗାଣ ବିଭାଗ, କୃଷି ବିଭାଗର ତଳସ୍ତରରୁ ଇନ୍‌କ୍ୱାରୀ ସବୁ ହେବ । ତାକୁ ଉପଜିଲ୍ଲାପାଳ ଓ ଜିଲ୍ଲାପାଳମାନେ ପରୀକ୍ଷା କରି ତା ଉପରେ ତାଙ୍କର ମନ୍ତବ୍ୟ ଦେବେ । ତାପରେ ଯୋଗାଣ ବିଭାଗରେ ସବୁ ରିପୋର୍ଟ ପରୀକ୍ଷା ହୋଇ ସମସ୍ତ ସ୍ତର ଟପି ଶେଷରେ ମନ୍ତ୍ରୀଙ୍କ ପାଖକୁ ଆସିବ ଓ ତାଙ୍କ ଆଦେଶ ବଳରେ ଦରଖାସ୍ତକାରୀଙ୍କୁ ପରମିଟ୍ ମିଳିବାର ବ୍ୟବସ୍ଥା ଥିଲା । ୧୯୭୭ ମସିହାରେ ଜନତା ପାର୍ଟି ସରକାର

କ୍ଷମତାକୁ ଆସିବା ପୂର୍ବରୁ ହଲର ସଂପର୍କୀୟ ନିୟମରେ କେତେକ ସଂଶୋଧନ କରି ହଲର ପରିବର୍ତ୍ତେ ସେଲ୍‌ର ପ୍ରଚଳନ କରିବାକୁ ନିଷ୍ପତ୍ତି ହୋଇଥାଏ। ସେଲର ପ୍ରଚଳନ ବ୍ୟବସ୍ଥାକୁ ଅତିକୋଠର ଭାଷାରେ ସମାଲୋଚନା କରି ମହତାବଜୀ ଲେଖିଥିଲେ। ତାଙ୍କର ଯୁକ୍ତି ଥିଲା ଯେ ହଲରକୁ ଜଣେ ସାଧାରଣ ବେକାର ଯୁବକ ବସାଇ ପାରିବ। ଚିଜି ଉଠିଯିବା ପରେ ବହୁ ସଂଖ୍ୟାରେ ହଲର ବସିଲେ ଅନେକ ପରିମାଣରେ ବେକାରୀ ସମସ୍ୟା ଦୂର ହେବ ଓ ଚାଷୀ ତା ନିଜ ଗାଆଁ କିମ୍ବା ପାଖ ଗାଁରେ ତା ଧାନକୁ ପେଷି ଚାଉଳ କରିପାରିବ। ସେଲର ବସାଇଲେ ଅଧିକ ଅର୍ଥ ଲାଗିବ ଓ ତାକୁ କେବଳ ଧନୀ ଲୋକମାନେ ବସାଇ ପାରିବେ। ସେଲରରେ ଧାନ ପେଷିଲେ କୁଣ୍ଡା ବାହାରିବ ନାହିଁ ଓ ଓଡ଼ିଶା ଭଳି ଗୋଟିଏ ଗରିବ କୃଷି ପ୍ରଧାନ ରାଜ୍ୟରେ ଗୋରୁଙ୍କୁ ପୋଷିବା ସଂଭବପର ହେବନାହିଁ। ମହତାବଜୀଙ୍କର ଏ ଲେଖା ମୋ ମନରେ ଗଭୀର ରେଖାପାତ କରିଥିଲା ଓ ମୁଁ ଯାଇ ତାଙ୍କ ସହ ଏ ସଂପର୍କରେ ଆଲୋଚନା କଲି। ସେ କହିଲେ ଯେ ଯେହେତୁ ଏ କାର୍ଯ୍ୟରେ ଓଡ଼ିଶାର ଚାଷୀ ଓ ବେକାର ଯୁବକମାନେ ଉପକୃତ ହେବେ, ତମେ ଏହା ଉପରେ ଦୃଢ଼ତା ସହକାରେ ପଦକ୍ଷେପ ନିଅ ଓ କେନ୍ଦ୍ର ସରକାରଙ୍କର ସହ ଆଲୋଚନା କରି ସେଲ୍‌ରକୁ ବର୍ତ୍ତମାନ ବନ୍ଦ କର। ହଲ୍‌ର ପରମିଟ ମିଳିବାରେ ତଳୁ ଉପର ପର୍ଯ୍ୟନ୍ତ ହେଉଥିବା ଦୁର୍ନୀତିକୁ ତମେ ହିଁ ବନ୍ଦ କରିପାରିବ ବୋଲି ଉତ୍ସାହ ଦେଇ କହିଲେ। ସେଲାର ପ୍ରଚଳନ ପାଇଁ ରାଜ୍ୟ ସରକାରଙ୍କୁ ବାଧ ନ କରିବାକୁ କେନ୍ଦ୍ର ସରକାରଙ୍କୁ ସେ ଲେଖିଥିବା ଏକ ଦୀର୍ଘ ପତ୍ରର ନକଲ ମୋତେ ଦେଖାଇଲେ ଓ କେନ୍ଦ୍ର ସରକାରଙ୍କ ସହ ଆଲୋଚନା କରି ଏ କଟକଣା ଦୂର କରିବାକୁ ମୋତେ ପରାମର୍ଶ ଦେଲେ। ଓଡ଼ିଶା ସରକାରଙ୍କ ତରଫରୁ ଏ ସଂପର୍କରେ ସମସ୍ତ ଯୁକ୍ତି ଦେଇ ମୁଁ କେନ୍ଦ୍ର ସରକାରଙ୍କ ପାଖକୁ ଚିଠି ଲେଖିଲି ଓ ଦିଲ୍ଲୀ ଯାଇ ଆଲୋଚନା କଲି। ମହତାବଜୀଙ୍କ ଚିଠିର ପ୍ରଭାବ କୃଷିମନ୍ତ୍ରୀ ଶ୍ରୀବର୍ଣ୍ଣାଲା ଓ ରାଷ୍ଟ୍ରମନ୍ତ୍ରୀ ଭାନୁପ୍ରତାପ ସିଂହଙ୍କ ଉପରେ ପଡିଥାଏ। ମୁଁ ଶେଷରେ ସଫଳ କାମ ହେଲି ଓ ଓଡ଼ିଶା ଯୋଗୁଁ ସମଗ୍ର ଦେଶରେ ହଲର ବନ୍ଦ କରି ସେଲର ପ୍ରଚଳନ ପାଇଁ ବିଧାନରେ ଯେଉଁ କଟକଣା ଥିଲା, ତାହା କୋହଳ କରାଗଲା।

ହଲର ପରମିଟ ପାଇଁ ଦରଖାସ୍ତ କରିଥିବା ଲୋକମାନେ ବର୍ଷ ବର୍ଷ

ଧରି ଦଉଡ଼ି ତଳୁ ଉପର ପର୍ଯ୍ୟନ୍ତ ଯେଉଁ ବ୍ୟାପକ ଅର୍ଥ ଖର୍ଚ୍ଚ କରୁଥିଲେ, ତା'ର ପରିସମାପ୍ତି ମୁଁ କରିଦେଲି। ମୋ ବିଭାଗରେ ଥିବା ୪ ହଜାରରୁ ଉର୍ଦ୍ଧ୍ୱ ଦରଖାସ୍ତକୁ ଗୋଟିଏ ନିର୍ଦ୍ଦେଶନାମାରେ ମଞ୍ଜୁର କରିଦେଲି। ସ୍କୁଲ, କଲେଜ ଓ ଡାକ୍ତରଖାନାର ନିକଟରେ ହଲ୍‌ର ବସିପାରିବ ନାହିଁ କେବଳ ଏହି କଟକଣା ରଖିଲି। ଗୋଟିଏ ପଞ୍ଚାୟତରେ କେତୋଟି ହଲ୍‌ର ବସିବାର ଯେଉଁ ଆଦେଶ ଥିଲା, ତାକୁ ନାକଚ କଲି। ମୋର ଏ ସମସ୍ତେ ପଦକ୍ଷେପ ଯୋଗୁଁ ମହତାବଜୀ ଖୁସି ହୋଇ ଟେଲିଫୋନ କରି କହିଲେ ଯେ, ସାଧାରଣ ଲୋକଙ୍କର ମୁଁ ବହୁ ଉପକାର କଲି ଓ ବହୁ ବର୍ଷ ଧରି ଚାଲିଥିବା ଦୁର୍ନୀତିକୁ ଅନେକ ପରିମାଣରେ ଦୂର କରିବାରେ ସକ୍ଷମ ହେଲି।

ଏଭଳି ବହୁ ଅନୁଭୂତି ରହିଛି, ଯାହାକୁ ଏଭଳି ଏକ ନିବନ୍ଧରେ ପ୍ରକାଶ କରିବା ସମ୍ଭବ ନୁହେଁ।। ଲୋକ ସମସ୍ୟା ଉପରେ ମହତାବଜୀଙ୍କର ବିଶ୍ଳେଷଣ ଓ ଦିଗ୍‌ଦର୍ଶନ ଅତୀବ ଗୁରୁତ୍ୱପୂର୍ଣ୍ଣ। ସାଧାରଣ ଲୋକଙ୍କର ସମସ୍ୟାକୁ ନେଇ ତାଙ୍କର ଆଲୋଚନାରେ ଓ ଲେଖାରେ ସେ ସରକାରଙ୍କୁ ପରାମର୍ଶ ଦିଅନ୍ତି। କ୍ଷେତ୍ର ଅନୁସାରେ ନିର୍ଦ୍ଦେଶ ଦିଅନ୍ତି ଓ ଆବଶ୍ୟକ ସ୍ଥଳେ ଯୁବ ସମାଜକୁ ବିପ୍ଳବ କରିବାକୁ ଆହ୍ୱାନ ଦିଅନ୍ତି। ଆଜି ଓଡ଼ିଶାର ଶାସନ ରାଜନୀତି ଓ ସମାଜକ୍ଷେତ୍ରରେ ଦ୍ରୁତ ଅବନତି ଘଟିଲାବେଳେ ମହତାବଜୀଙ୍କ ଭଳି ଜଣେ ଦୂରଦର୍ଶୀ ମହାନ୍ ଜନନେତା ଓ ତାଙ୍କର ଏ ଜାତି ପ୍ରତି ବିଭିନ୍ନ ସମୟର ଦିଗ୍‌ଦର୍ଶନ ଓ ଅବଦାନ କଥା ଓଡ଼ିଶାବାସୀ ସ୍ମରଣ କରୁଛନ୍ତି।

ଭୁବନେଶ୍ୱର



# ଏକ ସ୍ନେହଶୀଳ ବ୍ୟକ୍ତିତ୍ୱ

## ଦୁର୍ଗାମାଧବ ମିଶ୍ର

ଯେଉଁ କେତେଜଣ ମହାନୁଭବ ବ୍ୟକ୍ତି ନିଜର ସମସ୍ତ ଭୋଗ ବିଳାସ ତ୍ୟାଗ କରି ଦେଶର ହିତ ପାଇଁ ଓ ଜାତିର ସ୍ୱାଭିମାନ ଉତ୍ତୋଳିତ କରି ରଖିବା ପାଇଁ ସତତ କର୍ମରତ ଥିଲେ, ଡକ୍ଟର ମହତାବ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ। ଓଡ଼ିଶା ବାହାରେ ଓଡ଼ିଆମାନଙ୍କର ପରିଚୟ ଯେପରି ଜଗନ୍ନାଥଙ୍କର ଦେଶ ବୋଲି କହିଲେ ଲୋକେ ବୁଝନ୍ତି, ଶିକ୍ଷିତ ମହଲରେ, ସେହିପରି ଓଡ଼ିଶା କହିଲେ ଲୋକେ ବୁଝନ୍ତି ମହତାବ ବାବୁଙ୍କର ଦେଶ। ଏ ସମ୍ମାନ କେବଳ ପ୍ରଚାର ଦ୍ୱାରା କେହି ଆଦାୟ କରି ପାରିବେ ନାହିଁ। ଭାରତ ଯେପରି ଗାନ୍ଧିଙ୍କର ଦେଶ, ବଙ୍ଗଦେଶ ଯେପରି ରବିଠାକୁର କିମ୍ବା ସୁବାସ ବୋଷଙ୍କର ଦେଶ, ବିହାର ଶ୍ରୀକୃଷ୍ଣ ସିନ୍ହାଙ୍କର, ମଧ୍ୟପ୍ରଦେଶ ରବିଶଙ୍କର ଶୁକ୍ଳଙ୍କର, ମାନ୍ଦ୍ରାଜ ରାଜଗୋପାଳଚାରୀଙ୍କର ପ୍ରଭୃତି ଦେଶ ବୋଲି ଆମ ସମୟର ଲୋକେ ଜାଣୁଥିଲେ, ସେହିପରି ଶିକ୍ଷିତ ମହଲରେ ଓଡ଼ିଶା କହିଲେ ବୁଝା ଯାଉଥିଲା, ମହତାବଙ୍କର ଦେଶ।

ଏହି ଖ୍ୟାତି ପଛରେ ଯେଉଁ ମହାନ୍ ତ୍ୟାଗ ଲୁଚି ରହିଛି ତାହା କେହି ଚେଷ୍ଟା କରି ହାସଲ କରିପାରିବ ନାହିଁ। ଚେଷ୍ଟା ତ କେତେ ପ୍ରକାରର। ସାମୟିକ ଉତ୍ତେଜନାରେ କେତେକ ବ୍ୟକ୍ତି କିଛି ବାଟ ଆଗେଇ ଯାଆନ୍ତି। କିନ୍ତୁ ସମାନ୍ୟ ପ୍ରତିବନ୍ଧକ ଆସିଲେ, ସେମାନେ ଲୋକଲୋଚନରୁ ଅନ୍ତର୍ହିତ ହୋଇ ଯାଆନ୍ତି। କେତେକେ ପ୍ରତିବନ୍ଧକ ପଡ଼ିବ ବୋଲି ମୂଳରୁ କୌଣସି ଜିନିଷ ଆରମ୍ଭ କରିନ୍ତି ନାହିଁ। କେତେକ ବାରମ୍ବାର ପଛକୁ ପଛ ବିଘ୍ନ ଆସିଲେ ମଧ୍ୟ ତାହାକୁ ଅତିକ୍ରମ କରି ଯାଆନ୍ତି ଓ ସେହିପରି ଭାବରେ ବାଧାବିଘ୍ନକୁ ଦମନ କରି ଯେଉଁମାନେ ଉତ୍ତୀର୍ଣ୍ଣ ହୋଇ ଯାଆନ୍ତି, ସାଫଲ୍ୟ ତା'କୁ ଆଲିଙ୍ଗନ କରେ।

ଜମିଦାର ପରିବାରରେ ସେ ଜନ୍ମ ଲଭିଥିଲେ। ଏ ସମସ୍ତ ତ୍ୟାଗ କରିବା ପାଇଁ ତାଙ୍କୁ କେହି ବାଧ କରି ନଥା'ନ୍ତା। କିନ୍ତୁ ତାଙ୍କ ଭିତରର

ସଂସ୍କାର ତାଙ୍କୁ ଏହି ପଶୁତୁଲ୍ୟ ଜୀବନ ଯାପନ କରିବାରେ ପ୍ରତିରୋଧ କରିଥିଲା। ପଶୁ ଖାଉଛି। ନିଦ୍ରା ଯାଉଛି। ସାମାନ୍ୟ କଥାରେ ଭୟ କରୁଛି ଓ ବଂଶରକ୍ଷା ପାଇଁ ଯେତେ ନୁହେଁ ଯୌନ ପିପାସା ମେଣ୍ଟାଇବା ପାଇଁ ମୈଥୁନ କ୍ରିୟା କରୁଛି। କିନ୍ତୁ ତା ଦ୍ୱାରା, ସେହି ପଶୁଟିର ନିଜର, କିମ୍ବା ତା'ପରି ଅନ୍ୟ ପଶୁମାନଙ୍କର, କ'ଣ ଉପକାର ହେଉଛି? ଏହି ଚିନ୍ତା ମହତାବ ବାବୁଙ୍କ ପରି ସେହି ସମୟର ବହୁ ଯୁବକ ଯୁବତୀମାନଙ୍କୁ ଅଥୟ କରିଦେଲା। ହଠାତ୍ ଯେ ଚୈତନ୍ୟୋଦୟ ହେଲା, ତାହା ନୁହେଁ। ସମସ୍ତେ ବ୍ୟସ୍ତ ହେଉଥିଲେ। କିଛି କରି ପାରୁ ନଥିଲେ। କାରଣ ଜାଣି ନଥିଲେ କ'ଣ କିପରି କରି ଆରମ୍ଭ କରିବେ। ଅପେକ୍ଷା ଥିଲା, କ'ଣ କିପରି କରିବାକୁ ହେବ କିଏ କୁହନ୍ତା କି? ସେହି ପଥ ସର୍ବଭାରତୀୟ ସ୍ତରରେ ଦେଖାଇଲେ ଗାନ୍ଧିଜୀ। କିନ୍ତୁ ସେ ଏକୁଟିଆ କ'ଣ କରିପାରିଥାନ୍ତେ? ଏତେବଡ଼ ଦେଶ, ଯାହାକୁ ଉପମହାଦେଶ ବୋଲି ମଧ କୁହାଯାଏ, ତାହାର ଏ ପ୍ରାନ୍ତରୁ ସେ ପ୍ରାନ୍ତକୁ ବାର୍ତ୍ତା ପହଞ୍ଚିବା ଆବଶ୍ୟକ ଥିଲା। କେବଳ ଦୂରତ୍ୱ ତ ପ୍ରତିବନ୍ଧକ ନୁହେଁ। ଭାଷା ଭିନ୍ନ ଭିନ୍ନ। ଚଳଣି ଭିନ୍ନ ଭିନ୍ନ। ସଂସ୍କୃତି ଭିନ୍ନ ଭିନ୍ନ। ଲୋକମାନଙ୍କର ଭାଷାରେ ଗାଆଁକୁ ଗାଆଁ ବୁଲି କହିବାକୁ ହେବ। କିପରି ସେମାନଙ୍କ ସହିତ ଚଳପ୍ରଚଳ କଲେ ତୁମ ଉପରେ ଆସ୍ଥା ଆସିବ, ତାହା ଜାଣିବାର ଶକ୍ତି ଥିବ। ଏ ସମସ୍ତ କଠିନ ସାଧନା, ରାଜାପରି ଅଏସରେ ଯେ ଥିଲେ, ତାଙ୍କର କଅଣ ଗରଜ ପଡ଼ିଥିଲା, ଏ ସମସ୍ତ କୃଚ୍ଛ ସାଧନା କରିବା ପାଇଁ? କିଛି ବ୍ୟକ୍ତିଗତ ଲାଭତ ହେବ ନାହିଁ। ବ୍ରିଟିଶ ସରକାରଙ୍କର ବିଷଦୃଷ୍ଟି ପଡ଼ିବ। ଜେଲ ଯିବାକୁ ହେବ। ନିର୍ଯ୍ୟାତନା ସହିବାକୁ ହେବ। ସେ ସବୁକୁ ବରଣ କରିଥିଲେ ପ୍ରଥମ ପଙ୍କ୍ତିରେ ଯେଉଁ କେତେଜଣ ଶୁଦ୍ଧପୂତ ବ୍ୟକ୍ତି ସେମାନଙ୍କ ମଧ୍ୟରେ ମହତାବ ବାବୁ ଅନ୍ତର୍ଭୁକ୍ତ। କେବଳ ପ୍ରଚାର ଓ ପ୍ରସାର ଜଣେ ଦୁଇଜଣ କଲେ ହେବ ନାହିଁ। ଏହି ବୀଜମନ୍ତ୍ର ଆଗାମୀ ବଂଶଧରମାନଙ୍କ ଭିତରେ ବପନ କରିବାକୁ ପଡ଼ିବ। ତେବେ ଯାଇ ଉଦ୍ଦେଶ୍ୟ ସିଦ୍ଧ ହେବ।

ସେଥିପାଇଁ ପ୍ରଥମେ ଦୃଷ୍ଟି ଦେଲେ ସେ ସମ୍ବାଦପତ୍ର ପ୍ରକାଶ କରିବାରେ। ପ୍ରଜାତନ୍ତ୍ର ବାହାର କଲେ। ବାହାରିଲା ସିନା କିଣୁଛି କିଏ? ନ କିଣିଲେ କାଗଜଟି ଚାଲିବ କିମିତି? ବୃଥା ଅର୍ଥ ଶ୍ରାଦ୍ଧ ହେବ। ସେ ଚିନ୍ତା କରି ଦେଖିଲେ ଯେ, ଯାହାକୁ ଜଣେ କିଣିବ, ତାହା ଆକର୍ଷଣୀୟ ହେବା ଉଚିତ।

କିଶୋର କିଶୋରୀ, ଯୁବକ ଯୁବତୀ, ନାରୀ ସମାଜ, ଶିକ୍ଷିତ ଗୋଷ୍ଠୀ ସମସ୍ତଙ୍କର ଚାହିଦା ତ ଖାଲି ଖବର ଜାଣିବା ନୁହେଁ। ତେଣୁ କିଶୋର କିଶୋରୀମାନଙ୍କ ପାଇଁ 'ମୀନା ବଜାର' ଗୁରୁବାରର ଗୋଟିଏ ପୃଷ୍ଠା ମଣ୍ଡନ କଲା। ଗପ, କବିତା, ପ୍ରବନ୍ଧ, ଚିତ୍ର, ସେମାନଙ୍କର ମନଲାଖି ହେଲା। ପରେ ଅନ୍ୟମାନଙ୍କ ପାଇଁ ସେହିପରି ନାରୀମାନଙ୍କ ପାଇଁ ମହିଳାମହଲ, ସାହିତ୍ୟିକ ଓ କବି ମାନଙ୍କ ପାଇଁ ରବିବାରର ପ୍ରଜାତନ୍ତ୍ର, ନାଟ୍ୟକାର, ସଙ୍ଗୀତକାରମାନଙ୍କ ପାଇଁ ରୂପରସଛନ୍ଦ, ଏ ସମସ୍ତ ସେତେବେଳର ସ୍ଥାଣୁ ପତ୍ରିକା ଜଗତରେ ଚହଳ ପକାଇଦେଲା। ଏକା ଏକ ପାରିବାରିକ ପତ୍ରିକା ହୋଇଗଲା। ଏପରି ସମ୍ବାଦ ପରିବେଷଣ କରିବା ସହିତ ବିଭିନ୍ନ ଶ୍ରେଣୀର ପାଠକମାନଙ୍କ ପାଇଁ ଲେଖା ପ୍ରକାଶ କରିବା ଥିଲା ଏକ ଅଭିନବ ଉଦ୍ୟମ। ଏହା ଆଦୃତ ହେଲା।

ଏସବୁ ବିଭାଗ ସିନା ସେ କରିଦେଲେ। କିନ୍ତୁ ସେହି ପୃଷ୍ଠାମାନଙ୍କରେ ରୀତିମତ ଭାବରେ ଲେଖା ଲେଖିବ କିଏ? ଏ ପ୍ରତିବନ୍ଧକ ମଧ୍ୟ ସେ ଅତିକ୍ରମ କରିଗଲେ। ସେ ସମୟରେ ଯେଉଁ ପ୍ରତିଭାମାନଙ୍କର ନବ ଉନ୍ମେଷ ହେଉଥିଲା ସେମାନଙ୍କୁ ବ୍ୟକ୍ତିଗତ କିମ୍ବା ସାମୂହିକ ଭାବରେ ସେ ଭେଟିଲେ। ସେମାନଙ୍କୁ ଉତ୍ସାହ ଦେଲେ ଓ ସାମୟିକ ଭାବରେ ଉତ୍କୃଷ୍ଟ ଲେଖାମାନଙ୍କର ଲେଖକମାନଙ୍କୁ ପାରିତୋଷିକ ମଧ୍ୟ ଦେଲେ। ତେଣୁ ପ୍ରତିଭା ବିକଶିତ ହେବାର ମାର୍ଗ ଖୋଲିଗଲା। ସେ ପ୍ରିୟ ହୋଇଗଲେ ଆବାଳ ବୃଦ୍ଧ ବନିତା ସମସ୍ତଙ୍କର।

ସେ ଥିଲେ ଏକ ବହୁମୁଖୀ ବ୍ୟକ୍ତିତ୍ୱ। ସଚରାଚର ଏପରି ଜନପ୍ରିୟ ନେତା ଦେଖାଯାଆନ୍ତି ନାହିଁ। ଏହି ଜନପ୍ରିୟତା ପାଇଁ କେତେକ 'ଚେଷ୍ଟା କରନ୍ତି, କିନ୍ତୁ ଧରାପଡ଼ିଯା'ନ୍ତି। କାରଣ ସେମାନଙ୍କର ଏହି 'ଚେଷ୍ଟା'ରେ କୃତ୍ରିମତା ମୂଳଭିତ୍ତି ହୋଇଥିବାରୁ, ଆନ୍ତରିକତାର ଅଭାବ ଥାଏ। ଏ ପ୍ରକାର କୃତ୍ରିମ ସମ୍ବନ୍ଧ ସ୍ଥାପନକୁ ଇଂରାଜୀରେ 'Etequette' କହନ୍ତି। ଖାଲି ସଂପର୍କ ସ୍ଥାପନ ପାଇଁ କହିବାକୁ ପଡ଼ିବ ବୋଲି କେତେକ ପ୍ରକାରର କଥାବାର୍ତ୍ତାର ଢଙ୍ଗ ଓ ଉପାୟ ପାଶ୍ଚାତ୍ୟ ଦେଶମାନଙ୍କରେ ପୁସ୍ତକ ଆକାରରେ ଲିପିବଦ୍ଧ ହୋଇଛି। ଆମେ ସବୁ ପୁଲିସ ଟ୍ରେନିଂ ପାଇଁ ମାଉଣ୍ଟ ଆବୁ ଗଲାପରେ ଆମକୁ ଏହି ପୁସ୍ତକ କିଣି ପଢ଼ିବାକୁ ପଡ଼ିଲା ଓ ମଝିରେ ମଝିରେ ଆମ ଅଧ୍ୟକ୍ଷ ଗୋଟିଏ ଗୋଟିଏ ପିରିଅଡ଼ ନେଇ ଏହି ଶିକ୍ଷା ଦେଉଥିଲେ। ଅବଶ୍ୟ ସୌଭାଗ୍ୟବଶତଃ

ଏହି ବିଷୟଟି ଉପରେ ପରୀକ୍ଷା ହେଉ ନଥିଲା। ଏ ପ୍ରକାର ଆଦବ କାଏଦାର ପାଖ ମାଡ଼ୁ ନ ଥିଲେ ସେ। ଦେଖିଲେ, ଆରମ୍ଭ କରିଦେବେ, 'ହଇଓ ଦୁର୍ଗାମାଧବ, ବହୁତ ଦିନ ହେଲା କାହିଁକି ଲେଖା ପଠାଇ ନାହଁ..... '' ଇତ୍ୟାଦି। ସେଥିରେ ଅନ୍ତର ଭିତର ପୁରି ଉଠେ। କାରଣ ଔପଚାରିକ ବ୍ୟବହାର ଆମ ସଂସ୍କୃତିର ଅନ୍ତର୍ଭୁକ୍ତ ନୁହେଁ।

ଦେଶ ଓ ସମାଜର ଉନ୍ନତି ପାଇଁ କିଏ କେଉଁ କାମକୁ ଉପଯୁକ୍ତ, ତାହା ଜାଣିପାରିବାର ରହସ୍ୟଜନକ କ୍ଷମତା ତାଙ୍କର ଥିଲା। ସେହି ଅନୁସାରେ କୌଣସି ପ୍ରତ୍ୟକ୍ଷ ଉପଦେଶ କିମ୍ବା ଆଦେଶ ସେ ଦିଅନ୍ତି ନାହିଁ। ସେ ଜାଣନ୍ତି, ଏ ଆଦେଶ ଓ ଉପଦେଶ ଯୁବପୀଢ଼ି ସବୁକାଳରେ ଘୃଣା କରନ୍ତି। ତେଣୁ ସେ ସେହି ଭୁଲ୍ କରନ୍ତି ନାହିଁ। କିନ୍ତୁ ଏପରି ସୂକ୍ଷ୍ମ ମନୋବୈଜ୍ଞାନିକ କୌଶଳ ସେ ଆୟତ୍ତ କରିଥିଲେ ଯେ ତୁମେ ଦେଖିବ, ଯେଉଁ ଦିଗରେ ଯିବାକୁ ଇଚ୍ଛା କରୁଛ, ସେହି ଦିଗରେ ଗତି କରି ଯାଉଛ। ତୁମେ ଖୁସି ସେ ବି ଖୁସି, କାରଣ ସେ ଯାହା ଚାହୁଁଛନ୍ତି ତାହା ହୋଇ ଯାଉଛି। ଆମର ସାମ୍ପ୍ରତିକ କାଳର ବିପତ୍ତି ହେଉଛି, ଇଂରାଜୀର ଓଡ଼ିଆ ଅନୁବାଦ କରି କହିଲେ, ''ଗୋଲ କଣାଟିଏ ବୁଜିବାକୁ ଚାରିକୋଣିଆ ପଥରଟିଏ ବ୍ୟବହାର କରିବା' "Square Peg in a round hole". ଆମେ ଶୁଣୁଛୁଁ, ଚାକିରିଆମାନଙ୍କର ଦୁଃଖ ଯେ ବୃତ୍ତିଗତ ସନ୍ତୋଷ ଆସୁନାହିଁ। ତାହା ଅର୍ଥ, ଯେଉଁ ବୃତ୍ତି ସେ କରୁଛି, ସେଥିପ୍ରତି ତା'ର ପ୍ରବୃତ୍ତି ନାହିଁ। ତେଣୁ ଅସନ୍ତୋଷ ଓ ନୈରାଶ୍ୟ ଆମର ବିଭିନ୍ନ ଗୋଷ୍ଠୀକୁ ନୟାନ୍ତ କରି ଦେଉଛି।

ଏ ତ ଗଲା, ଜାତିକୁ ମୂଳରୁ ଗଢ଼ି ତୋଳିବା। ପ୍ରଶାସନରେ ତାଙ୍କର କୃତିତ୍ୱ ଅନୁଶୀଳନ କଲେ, ଚାଣକ୍ୟଙ୍କର କୂଟନୀତି ଓ ରାଜନୈତିକ କୌଶଳରେ ସେ ଯେ ଧୁରନ୍ଧର ଥିଲେ ଏଥିରେ ସନ୍ଦେହ ରହିବ ନାହିଁ। ସେ ରାଜବଂଶରେ ଜନ୍ମ ଲାଭ କରିଥିଲେ। ତେଣୁ ଏହା ତାଙ୍କର ସହଜାତ ଗୁଣ। ମୁଁ ଏହା କହି ତାଙ୍କୁ ଅବଜ୍ଞା କରୁ ନାହିଁ। କାରଣ ମହାଭାରତରେ ଉଲ୍ଲେଖ ଅଛି ଯେ, ଶରଶଯ୍ୟାରେ ଶାୟିତ ଭୀଷ୍ମଙ୍କୁ ଯେତେବେଳେ ଯୁଧିଷ୍ଠିର ଶାସନ କରିବାର କୌଶଳ କ'ଣ ବୋଲି ପଚାରିଲେ, ସେ କହିଥିଲେ, 'ସାମ', 'ଦାନ', 'ଦଣ୍ଡ' ଓ 'ଭେଦ'। ଭେଦ ସୃଷ୍ଟି କଲେ ସତ୍ୟ ଜଣାଯାଏ। ଗୁପ୍ତଚର ନିଯୁକ୍ତ କରିବା ଶାସନର ଏକ ଅତ୍ୟାବଶ୍ୟକ ଅଙ୍ଗ। ସେ ସମସ୍ତରେ ପଟୁତା

ଲାଭ କରିବା ଦୂଷିତ ଅନ୍ତଃକରଣର ପରିଚାୟକ ନୁହେଁ। ସେ ନାଲିକାଳି ଓ କଳା କାଳିରେ ଆଦେଶ ଦେଉଥିଲେ ମୁଖ୍ୟମନ୍ତ୍ରୀ ଥିଲାବେଳେ, ତା'ର ଉଦ୍ଦେଶ୍ୟ ନାଲି କାଳିରେ ଲେଖା। ଆଦେଶ ଅବଶ୍ୟ ପାଳନୀୟ ଓ କଳା କାଳିର ଆଦେଶ ପାଳନ କରିବା ଇଚ୍ଛାଧୀନ। ଏହା ମୁଁ ଜାଣି ନଥିଲି। ଜାଣିଲା ପରେ ପଚାରିଲି। "ଏହା କ'ଣ ସତ୍ୟ?" ସେ କହିଲେ, 'ତୁମେ ଅଧଘଣ୍ଟାଏ ପାଖ କୋଠରୀରେ ବସ। ଯେଉଁମାନେ ମୋତେ ଦେଖାକରିବାକୁ ବସିଛନ୍ତି, ସେମାନେ ଆସିବେ। ସେମାନେ କ'ଣ କହୁଛନ୍ତି, ଶୁଣି ସାରିଲା ପରେ ଆଲୋଚନା କରିବା।" ସେହି ଅଧଘଣ୍ଟାକ ଭିତରେ ମୋ ମନର ସମସ୍ତ କ୍ଷୋଭ ଦୂରୀଭୂତ ହୋଇଗଲା। ସାକ୍ଷାତକାର ସରିଲା ପରେ ସେ କହିଲେ, 'ଦେଖିଲ ତ! ଏତେ ପ୍ରକାରର ଲୋକ। ଏତେ ପ୍ରକାରର ଅନୁରୋଧ। ମନା ତ କରି ହେବ ନାହିଁ। ଯେତେଟା ନ କଲେ ନ ଚଳେ, ସେତକ କରିବାକୁ ନାଲି କାଳି ଓ ବାକି ସବୁ କଳା କାଳି। ସେମାନଙ୍କୁ ମୁଁ ବୁଝାଇ ପାରିବି ନାହିଁ ଶାସନର ନୀତି। ଆର୍ଥିକ ଅସ୍ୱଚ୍ଛଳତା ଇତ୍ୟାଦି। ମୁଁ ଯେ ଆଦେଶ ଦେଲି ତାହା ତାଙ୍କ ପକ୍ଷରେ ଯଥେଷ୍ଟ ସାନ୍ତ୍ୱନା। କେତେବେଳେ ହେଲେ ତ ତାଙ୍କର ଅସୁବିଧା ଦୂର ହେବ। ଏବେ ହଠାତ୍ ଦୂର ନ ହେଲେ ଯେଉଁଗୁଡ଼ାକ ଚଳିବ, ତାକୁ ଆଉ କଳା କାଳିରେ ନ ଲେଖି କ'ଣ କରିବି କୁହ।'

ଏ ହେଲେ ମହତାବ ବାବୁ। ଯୁବ ଗୋଷ୍ଠୀର ଦିଗ୍‌ଦର୍ଶକ, ଲୁକ୍କାୟିତ ପ୍ରତିଭାମାନଙ୍କର ଉନ୍ମେଷକ, ନବୀନ ଚିନ୍ତାଧାରାର ଆଦ୍ୟ ପ୍ରବକ୍ତା, ସ୍ୱୟଂ ସାଧକ, ସେ କେବଳ କହନ୍ତି ନାହିଁ। ସାହିତ୍ୟ ସୃଷ୍ଟି କରିଛନ୍ତି। ଇତିହାସ ଗବେଷଣା କରିଛନ୍ତି। କେନ୍ଦ୍ର ଓ ରାଜ୍ୟରେ ପ୍ରଶାସନ କରିବାରେ ପଟୁତା ହାସଲ କରିଛନ୍ତି ଓ ସବୁଠାରୁ ବଡ କଥା, ଅତି ସ୍ନେହୀ ବ୍ୟକ୍ତିଟିଏ।

'ଚନ୍ଦ୍ରାଲୋକ'
ପ୍ଲଟ ନଂ.ଡି.୯, ବି.ଜେ.ବି ନଗର,
ଭୁବନେଶ୍ୱର-୧୪



# ମହତାବଜୀ ଏକ ମହାନ ବ୍ୟକ୍ତିତ୍ୱର ଅନ୍ୟ ଏକ ଦିଗ

କୃଷ୍ଣପ୍ରସାଦ ମହାପାତ୍ର

ସମ୍ବଲପୁର ସହରର ନନ୍ଦପଡ଼ାକୁ ଲାଗି ମାରୱାଡ଼ିପଡ଼ାର ଆରମ୍ଭ। ବଡ଼ ସଡ଼କ କଡ଼ରେ ପ୍ରଥମ କୋଠାଘରଟି ଶ୍ରୀ ପ୍ରହ୍ଲାଦ ରାୟ ଲାଠ ଓ ତାଙ୍କ ଭାଇମାନଙ୍କ ବ୍ୟବସାୟ ଗଦି ତଥା ବାସଗୃହ। ଶ୍ରୀ ଲାଠ ଜଣେ ମାରୱାଡି ବ୍ୟବସାୟୀ ହୋଇଥିଲେ ହେଁ ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ୧୯୩୭ ମସିହାରେ ପଦ୍ମପୁର ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହେଇଥିଲେ କଂଗ୍ରେସ ଦଳର ସଭ୍ୟ ଭାବେ। ବୋଧହୁଏ ୧୯୪୪-୪୫ ମସିହାର ଘଟଣା। ସେ ସମୟରେ ମୁଁ ରେଭେନ୍‌ସା କଲେଜରେ ଅଧ୍ୟୟନରତ। ଛୁଟି କଟାଇବା ପାଇଁ ନନ୍ଦପଡାରେ ଅବସ୍ଥାନ କରୁଥାଏ। ଗୁଜବ ଉଠିଲା ହରେକୃଷ୍ଣ ମହତାବଙ୍କୁ ବ୍ରିଟିଶ ସରକାର ସମ୍ବଲପୁର ଜେଲରୁ ଖଲାସ କରିଦେବେ ଓ ଖଲାସ ହେବାମାତ୍ରେ ସେ ଶ୍ରୀଲାଠଙ୍କ ବାସଭବନକୁ ପଦାର୍ପଣ କରିବେ। ସେ ସମୟରେ ସମ୍ବଲପୁର ଅଞ୍ଚଳରେ ବହୁ ସ୍ୱାଧୀନତା ସଂଗ୍ରାମୀ, ଯଥା-ଫକୀର ବେହେରା, ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ନୃସିଂହ ଗୁରୁ, ବୋଧରାମ ଦୁବେ, ମିତ୍ରଭାନୁ ପାଣିଗ୍ରାହୀ, ଭାଗିରଥୀ ପଟ୍ଟନାୟକ ଓ ପ୍ରଭାବତୀ ଦେବୀ ପ୍ରମୁଖ ସ୍ୱାଧୀନତା ଆନ୍ଦୋଳନ ଚାଲୁ ରଖିଥାନ୍ତି। ଏମାନେ ସମସ୍ତେ ପ୍ରାୟ ଅନେକବାର କାରାବରଣ କରିଥାନ୍ତି। ଦୁଇଟି ଗ୍ରାମ; ଯଥା-ବରଗାଁ ଓ ପାଣିମୋରା ସ୍ୱାଧୀନତା ସଂଗ୍ରାମୀଙ୍କ ଦୁର୍ଗ ବୋଲି ପରିଗଣିତ ହେଉଥାଏ। ସେ ଅଞ୍ଚଳର ପ୍ରାୟ ସମସ୍ତେ ଗୋପବନ୍ଧୁ, ନୀଳକଣ୍ଠ ଓ ଗୋଦାବରୀଶଙ୍କୁ ଜାଣିଥାନ୍ତି। ଅନ୍ୟାନ୍ୟ ନେତୃବୃନ୍ଦ; ଯଥା-ବିଶ୍ୱନାଥ ଦାଶ, ନିତ୍ୟାନନ୍ଦ କାନୁନ୍‌ଗୋ, ଯଦୁମଣି ମଙ୍ଗରାଜ, ଗୋପବନ୍ଧୁ ଚୌଧୁରୀ ଓ ରମା ଦେବୀ ଇତ୍ୟାଦି ଅପରିଚିତ ନଥାନ୍ତି। ମହତାବଜୀଙ୍କୁ ସମସ୍ତେ ଜାଣିଥିଲେ ସୁଦ୍ଧା, ତାଙ୍କୁ ଟିକିଏ ଭିନ୍ନ ଦୃଷ୍ଟିରେ ଦେଖୁଥାନ୍ତି, କାରଣ ସେ ଥିଲେ ଜଣେ ଜମିଦାର ଓ ଧନୀବ୍ୟକ୍ତି; ତଥାପି ସର୍ବତ୍ୟାଗୀ। ତାଙ୍କ ନାମ ସହିତ ଟିକିଏ ରୋମାଞ୍ଚ ଲାଗି ରହିଥାଏ। ଏହା ପ୍ରାୟ ଜଣାଥାଏ

ଯେ, ସେ ଗାନ୍ଧିଜୀ ଓ ପଣ୍ଡିତ ନେହେରୁଙ୍କ ଭଳି କେନ୍ଦ୍ରୀୟ ନେତୃବୃନ୍ଦଙ୍କ ସହ ସମ୍ପର୍କ ରଖିଥିଲେ ଓ ଏକଦା ଆହମଦନଗର ଦୁର୍ଗରେ ବନ୍ଦୀ ହୋଇଥିଲେ। ତେଣୁ ତାଙ୍କୁ ଦେଖିବା ପାଇଁ ସମସ୍ତେ ଉତ୍କଣ୍ଠା ହେବା ସ୍ୱାଭାବିକ।

ବାର ବା ତାରିଖ ସ୍ମରଣ ହେଉ ନାହିଁ। ଦିନ ପ୍ରାୟ ସାଢେବାର ବା ଗୋଟାଏ। ଶ୍ରୀଲାଠଙ୍କ ବାସଭବନର ସମସ୍ତ ଅନ୍ତେବାସୀ ଚଞ୍ଚଳ ହୋଇ ଉଠିଥାନ୍ତି। ଉପର ମହଲା ବାଲକୋନି ମହିଳାଙ୍କ ଦ୍ୱାରା ଭରପୂର। ଗୃହ ସମ୍ମୁଖ ବଡ଼ ସଡ଼କରେ ବହୁଲୋକ ଜମା ହୋଇଥାନ୍ତି। ଗୋଟାଏ କଳା ରଙ୍ଗର ମୋଟର ଗାଡ଼ି ଆସି ଅଟକିଲା। ଶ୍ରୀଲାଠ ପ୍ରଥମେ ଗାଡ଼ି ପଛପଟରୁ ଦରଜା ଖୋଲି ବାହାରିଲେ। ତାଙ୍କ ପଛେ ପଛେ ବାହାରିଲେ ଜଣେ ସୁଦର୍ଶନ ଯୁବକସୁଲଭ ଦୀପ୍ତିମାନ ବ୍ୟକ୍ତି। ପରିଧାନ ଗୋଟିଏ ଧଳା ରଙ୍ଗର ଫୁଲପ୍ୟାଣ୍ଟ ଓ ଈଷତ୍ ହଳଦିଆ ରଙ୍ଗର ଗଳାବନ୍ଧା କୋଟ। ମହତାବଜୀଙ୍କୁ ଏହା ଥିଲା ମୋର ପ୍ରଥମ ଦର୍ଶନ।

ବୋଧହୁଏ ୧୯୪୫-୪୬ ମସିହା। କୌଣସି ଏକ ଛୁଟି ପରେ ସମ୍ବଲପୁରରୁ କଟକ ଫେରୁଥାଏ। ସଙ୍ଗରେ ଥା'ନ୍ତି ମୋର ବାଲ୍ୟବନ୍ଧୁ ବରଗଡ଼ ନିବାସୀ ବ୍ୟବସାୟୀ ଓ ଉପନ୍ୟାସ ଲେଖକ ଶ୍ରୀ ଦୟାଲାଲ ଯୋଷୀ। ମେରାମଣ୍ଡଳୀ ରେଳ ଷ୍ଟେସନରେ ମୋଟର ଗାଡ଼ିରୁ ଓହ୍ଲାଇ ତାଳଚେର ଟ୍ରେନ୍‌ର ଗୋଟିଏ ତୃତୀୟ ଶ୍ରେଣୀ ଡବାରେ ଆମେ ବସିଗଲୁ। ଟ୍ରେନ୍ ଚାଲିବା ପରେ ମୁଁ ଦେଖିଲି ସେହି ତୃତୀୟ ଶ୍ରେଣୀ ଡବାରେ ଅନ୍ୟାନ୍ୟ ଯାତ୍ରୀଙ୍କ ମଧ୍ୟରେ ବସିଛନ୍ତି ମହତାବଜୀ ଓ ତାଙ୍କ ସାଙ୍ଗରେ ଅଛନ୍ତି ଗଞ୍ଜାମ ନିବାସୀ ମଧୁସୂଦନ ମହାପାତ୍ର। ସେ ଦୁହେଁ ଆଲୋଚନାରତ, ଯାତ୍ରୀମାନେ ତାଙ୍କୁ ସମ୍ମାନ ଦେଖାଉଥାନ୍ତି।

୧୯୪୭-୪୮ ମସିହାରେ ମହତାବଜୀ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥା'ନ୍ତି। ସେ ସମୟରେ ରେଭେନ୍‌ସା କଲେଜର ପୂର୍ବ ଓ ପଶ୍ଚିମ ଛାତ୍ରାବାସ ଛଡା ସ୍ନାତକୋତ୍ତର ଛାତ୍ରଙ୍କ ପାଇଁ ଅନ୍ୟ କୌଣସି ଛାତ୍ରାବାସ ନଥାଏ। ଅଳ୍ପ ସଂଖ୍ୟକ ଛାତ୍ର ଇଂରାଜୀ ଓ ଓଡ଼ିଆ ସାହିତ୍ୟରେ ଏମ୍.ଏ ପଢୁଥା'ନ୍ତି। ବହୁ ସଂଖ୍ୟକ ଛାତ୍ର ଆଇନ କଲେଜରେ ପଢୁଥାନ୍ତି। ମୁଁ ମଧ୍ୟ ଆଇନ କଲେଜର ଛାତ୍ର। ଏ ସମସ୍ତ ଛାତ୍ରଙ୍କ ପାଇଁ ଛାତ୍ରାବାସ ନ ଥିବାରୁ, ସେମାନେ ବିଭିନ୍ନ ମେସ୍‌ମାନଙ୍କରେ, ତାଳଦଣ୍ଡା କେନାଲ ପୋଲ ନିକଟସ୍ଥ ପାରାଡାଇଜ୍ ହୋଟେଲ୍‌ରେ ପୂର୍ବ ଓ ପଶ୍ଚିମ ଛାତ୍ରାବାସରେ ବିଭିନ୍ନ କୋଠରୀରେ ଅନ୍ୟାନ୍ୟ ଛାତ୍ରଙ୍କ

ସହ ରହୁଥାନ୍ତି। କଲେଜର ଅଧ୍ୟକ୍ଷ ଥା'ନ୍ତି ଏସ୍.ରାୟ। ସେ ଅତି ଉତ୍ତମ ପୁରୁଷ, ଭଦ୍ର ଓ ଛାତ୍ରବତ୍ସଳ। ସ୍ନାତକୋତ୍ତର ଛାତ୍ରଙ୍କ ଥଇଥାନ ନିମନ୍ତେ ପୂର୍ବ ଛାତ୍ରାବାସର ଓ୍ୱାଡେନ ନିବାସ ସ୍ନାତକୋତ୍ତର ଛାତ୍ରାବାସ ରୂପେ ଉନ୍ମୁକ୍ତ କଲେ। ପୂର୍ବ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ ଇଂରେଜୀ ସାହିତ୍ୟ ଅଧ୍ୟାପକ ପି.ଏସ୍.ସୁନ୍ଦରମ୍, ଉପରୋକ୍ତ ଛାତ୍ରାବାସର ଅଧ୍ୟକ୍ଷ ରହିଲେ। ସମୁଦ୍ରକୁ ଶଙ୍ଖେ ପାଣି ସ୍ୱରୂପ, ସେହି ଛାତ୍ରାବାସ ସମସ୍ତ ଛାତ୍ରଙ୍କ ରହିବା ପାଇଁ ଯଥେଷ୍ଟ ହେଲାନାହିଁ। କେବଳ କେତେକ ଏମ୍.ଏ. ଓ ଆଇନ ଦ୍ୱିତୀୟ ବିଭାଗ ଛାତ୍ର ସେଇଠି ସ୍ଥାନ ପାଇଲେ। ମୋତେ ମିଶାଇ ବହୁ ସ୍ନାତକୋତ୍ତର ଛାତ୍ର ଛାତ୍ରାବାସରେ ସ୍ଥାନ ନ ପାଇ କଟକ ସହରରେ ଇତସ୍ତତଃ ବାସ କଲେ।

ଦିନେ ଆମେ କେତେଜଣ ଛାତ୍ର ନିଷ୍ପତ୍ତି କଲୁ ଯେ, ଗୋଟିଏ ପ୍ରତିନିଧି ଦଳ ମହତାବଜୀଙ୍କୁ ସାକ୍ଷାତ କରି ଗୋଟାଏ ଛାତ୍ରାବାସ ନିର୍ମାଣ ପାଇଁ ଦାବି ଜଣାନ୍ତୁ। କିଛି ନା କିଛି ସମାଧାନର ସୂତ୍ର ବାହାରିବ। ସେ ସମୟରେ ଓଡ଼ିଶା ସଚିବାଳୟ ଥାଏ କିଲ୍ଲା ପଡ଼ିଆ ନିକଟବର୍ତ୍ତୀ ପୁରାତନ ସଚିବାଳୟ କୋଠାରେ। ପ୍ରଧାନମନ୍ତ୍ରୀଙ୍କ ଅଫିସ ଥାଏ ପୁରାତନ ପବ୍ଲିକ ସର୍ଭିସ କମିଶନ୍ କୋଠା ପାଖରେ ଥିବା ଆଜ୍‌ବେଷ୍ଟସ୍ ଛାତ ବିଶିଷ୍ଟ ଗୋଟାଏ ଧାଡ଼ି ଅଫିସ ଗୃହର ଶେଷ କୋଠରୀରେ। ଏହି ଗୃହଟି ଆଜି ପର୍ଯ୍ୟନ୍ତ ଅଛି। ସେହି ଶେଷ କୋଠରୀରେ ପ୍ରଧାନମନ୍ତ୍ରୀ ମହତାବଜୀ ଅଫିସ କରୁଥାନ୍ତି।

ଦିନେ ଖରାବେଳେ ମୋତେ ମିଶାଇ ପ୍ରାୟ ଚାରି-ପାଞ୍ଚ ଜଣ ସ୍ନାତକୋତ୍ତର ଛାତ୍ର ପ୍ରତିନିଧି ସଚିବାଳୟରେ ମହତାବଜୀଙ୍କ ସହ ସାକ୍ଷାତ କରିବା ପାଇଁ ପହଞ୍ଚିଲୁ। ସେ ଅଫିସରେ ନ ଥିଲେ। ମାତ୍ର ଜଣେ ଚପରାସୀ ଖୋଲା ବାରଣ୍ଡାରେ ଥାଏ। ପୋଲିସ ଗାର୍ଡ ସିକ୍ୟୁରିଟି ବା ଅନ୍ୟାନ୍ୟ କର୍ମଚାରୀ କେହି ନଥାନ୍ତି। ଅଫିସ ଗୃହର ଦରବାଜା କିନ୍ତୁ ଖୋଲା ଥାଏ। ପୂର୍ବରୁ ପ୍ରତିନିଧି ଦଳ ପ୍ରଧାନମନ୍ତ୍ରୀଙ୍କୁ ସାକ୍ଷାତ କରିବା ପାଇଁ ଅନୁମତି ନେଇ ନଥାନ୍ତି। ଆମେ ଚପରାସୀଙ୍କୁ ଜଣାଇଲୁ ଯେ, ଆମେ ସବୁ ରେଭେନ୍‌ସା କଲେଜ ଛାତ୍ର, ପ୍ରଧାନମନ୍ତ୍ରୀଙ୍କୁ ଦେଖାକରିବା ପାଇଁ ଆସିଅଛୁ। ସେହି ସମୟରେ ରେଭେନ୍‌ସା କଲେଜ ଛାତ୍ରଙ୍କର କଟକ ସହରରେ ଭାରି ଖାତିର ଥାଏ। ସାଧାରଣ କଟକ ସହରବାସୀ ତାଙ୍କୁ ବହୁତ ସମ୍ମାନ କରୁଥାନ୍ତି। ଚପରାସୀ ମହାଶୟ ବହୁତ ସମ୍ଭ୍ରମ ସହକାରେ କହିଲେ, ପ୍ରଧାନମନ୍ତ୍ରୀ ମଧ୍ୟାହ୍ନଭୋଜନ ପାଇଁ ଯାଇଛନ୍ତି।

ଦିନ ଅଢ଼େଇ ବା ତିନିଟାରେ ଫେରିବେ। ସେ ଆସିଲେ ତାଙ୍କୁ ଆମେ ସାକ୍ଷାତ କରିପାରିବୁ। ଆମେ ସେଠାରୁ ଚାଲିଯାଇ, ଅନ୍ୟ ପାଖରେ ବୁଲାବୁଲି କରି ଦିନ ପ୍ରାୟ ତିନିଟାବେଳେ ଫେରି ଆସି ଦେଖିଲୁ ପ୍ରଧାନମନ୍ତ୍ରୀ ଅଫିସରେ ଆସି ବସିଲେଣି। ଆମକୁ ଦେଖି ଚପରାସୀ ଭିତରକୁ ଗଲେ ଓ ପରେ ପରେ ବାହାରକୁ ଆସି ଆମକୁ ଅଫିସ ଭିତରକୁ ଡାକିନେଲେ। ପ୍ରଧାନମନ୍ତ୍ରୀ ଅଫିସ ସାଜସଜ୍ଜା ଅତି ସାଧାରଣ। ଗୋଟାଏ ବଡ଼ ସେକ୍ରେଟେରୀଏଟ୍ ଟେବୁଲ ପଛପଟରେ ଝରକା ଆଡ଼କୁ ପିଠି କରି ବସିଥାନ୍ତି ମହତାବଜୀ। ପରିଧାନ ଧଳା ଖଦଡ଼, ଅଧାହାତ ଥିବା ହାବାଇନ ସାର୍ଟ ଓ ପ୍ୟାଣ୍ଟ। ଟେବୁଲ ଆଗରେ ପଡ଼ିଥାଏ ଚାରି, ପାଞ୍ଚଟି ସାଧାରଣ କାଠ ଚୌକି, ଝରକା ଓ ଦରଜାରେ ଝୁଲୁଥାଏ ସାଧାରଣ ପରଦାକନା। ଚଟାଣ ଉପରେ ପଡିଥାଏ ଗୋଟାଏ ବହୁ ବ୍ୟବହୃତ ସତରଞ୍ଜି। ନଥାଏ ଫୁଟେ ବହଳର ଦାମିକା ସୋଫାସେଟ୍, ଦାମିକା କନାର ପର୍ଦ୍ଦା, ଚକ ଚକ କରୁଥିବା ପିତଳର ଫୁଲକୁଣ୍ଡ, କାନ୍ଥରେ ତୈଳଚିତ୍ର ବା ଚଟାଣ ଉପରେ ପଶମ ରଙ୍ଗୀନ ଗାଲିଚା। ଆମକୁ ଚୌକିରେ ବସିବାକୁ କହି, ଅତି ସାଧାରଣ ଭାବେ ଧୀର ସ୍ୱରରେ ମହତାବଜୀ କହିଲେ, ପିଲାମାନେ କୁଆଡ଼େ ଆସିଛ। ସବୁ ଭଲ ତ। ଆମେ ତାଙ୍କୁ ସ୍ନାତକୋତ୍ତର ଛାତ୍ରାବାସ ବିଷୟରେ ଆମର ସମସ୍ତ ଅସୁବିଧା କଥା କହିଲୁ। ବିଶେଷ କରି ଦୂର ଦୂରାନ୍ତର ଛାତ୍ରମାନେ ବହୁତ କଷ୍ଟ ପାଉଥିବା ବିଷୟ ଉତ୍‌ଥାପନ କଲୁ। ମନୋଯୋଗ ସହ ସବୁ ଶୁଣି ମହତାବଜୀ କହିଲେ-ପିଲାମାନେ, ସବୁ ଅସୁବିଧା କଥା ମୁଁ ଜାଣେ। ଗୋଟାଏ ସ୍ନାତକୋତ୍ତର ଛାତ୍ରାବାସ ତୁମେ ଆସନ୍ତା ଶିକ୍ଷାବର୍ଷ ନିୟମାନୁଯାୟୀ ପାଇବ। କିନ୍ତୁ ଏହି ବର୍ଷରୁ ମଧ୍ୟ ଟିକିଏ ଅସୁବିଧା ସହ ସେଇଠି ଚଳିପାରିବା ଭଳି ବ୍ୟବସ୍ଥା କରା ହେଉଅଛି। ତୁମେ ଯାଅ, ଅନ୍ୟାନ୍ୟ ଛାତ୍ରଙ୍କୁ କହିବ କାହାରି କିଛି ଅସୁବିଧା ହେବନାହିଁ। ତା'ପରେ ସେ ଅନ୍ୟାନ୍ୟ ବିଷୟ ଆଲୋଚନା କରି ଆମ ପାଖରୁ ଖବର ବୁଝିଲେ ଓ ଆମକୁ ସାହସ ଦେଇ ବିଦାୟ ଦେଲେ। ଆପାତତଃ ଆମେ ତାଙ୍କ ଶିଷ୍ଟାଚାର, ବ୍ୟବହାର ଓ ପ୍ରତିଶ୍ରୁତିରେ ସନ୍ତୁଷ୍ଟ ହେଲୁ।

କିଛି ଦିନ ପରେ ପୂର୍ବ ଛାତ୍ରବାସ ସଂଲଗ୍ନ ସ୍ନାତକୋତ୍ତର ଛାତ୍ରବାସକୁ ଗୋଟାଏ ବଡ଼ ରେଡ଼ିଓ ସେଟ ଆସିଗଲା। ମହତାବଜୀ ପଠାଇଥିଲେ ଛାତ୍ରମାନେ ଦେଶ ବିଦେଶର ଖବର ଶୁଣିବା ପାଇଁ। ତା'ପରେ ସରକାରୀ ଅନୁଦାନ

ଆସିଗଲା, ଛାତ୍ରମାନେ ଓଡ଼ିଶା ବାହାରେ ବିଭିନ୍ନ ଦର୍ଶନୀୟ ସ୍ଥାନକୁ ପରିଦର୍ଶନ କରି ଜ୍ଞାନାର୍ଜନ କରିପାରିବେ। ଏହି ସରକାରୀ ଅନୁଦାନର ସୁଯୋଗ ନେଇ ଆଇନ କଲେଜ ଛାତ୍ରମାନେ ଶାନ୍ତି ନିକେତନ ଓ ଟାଟାନଗର ପରିଦର୍ଶନ କରିପାରିଥିଲେ। ଅନ୍ୟାନ୍ୟ ଶ୍ରେଣୀର ଛାତ୍ରମାନେ ମଧ୍ୟ ଏହି ସୁଯୋଗ ନିଶ୍ଚିତ ଭାବେ ନେଇଥିବେ।

୧୯୪୮ ମସିହା ଆଦ୍ୟରେ ଆମେ ଜାଣିଲୁ, କଟକ ରେଳଷ୍ଟେସନ ଅପର ପାର୍ଶ୍ୱରେ ଥିବା ମୟୂରଭଞ୍ଜ ମହାରାଜାଙ୍କ ପ୍ରାସାଦ ଓ ତତ୍‌ସଂଲଗ୍ନ କୋଠା, ବାଡ଼ି ଓ ପଡ଼ିଆ ଇତ୍ୟାଦି ସ୍ନାତକୋତ୍ତର ଛାତ୍ରାବାସରେ ପରିଣତ ହେବ ଓ ସେଥିପାଇଁ ଅଧ୍ୟାପକ କରୁଣାକରଙ୍କ ଆଦେଶ ମତେ ଛାତ୍ରମାନେ ସାମାନ୍ୟ ଅସୁବିଧା ସହ ନିଜ ଖର୍ଚ୍ଚରେ ଆଗତୁରା ରହିପାରିବେ। ମୋ' ସମେତ ବହୁ ବାସହୀନ ଛାତ୍ର ଏହି ସୁଯୋଗ ନେଇଥିଲେ। ପରେ ୧୯୪୮-୪୯ ଶିକ୍ଷା ବର୍ଷ ପ୍ରାରମ୍ଭରୁ ମୟୂରଭଞ୍ଜ ସ୍ନାତକୋତ୍ତର ଛାତ୍ରାବାସ ପ୍ରତିଷ୍ଠା ହେଲା। ଓଡ଼ିଆ ଅଧ୍ୟାପକ ଜୟକୃଷ୍ଣ ମିଶ୍ର ଥିଲେ ପ୍ରଥମ ସୁପରିଣ୍ଟେଣ୍ଡେଣ୍ଟ। ଉକ୍ତ ଛାତ୍ରାବାସର ପ୍ରଥମ ଅନ୍ତେବାସୀଙ୍କ ମଧ୍ୟରେ ଥିଲେ, ନଟବର ପ୍ରଧାନ (ପରେ ମନ୍ତ୍ରୀ), ସୋମନାଥ ରଥ (ପରେ ମନ୍ତ୍ରୀ ଓ ବାଚସ୍ପତି), ଉପେନ୍ଦ୍ର ପ୍ରସାଦ ଗୁରୁ (ଆଇ.ଏ.ଏସ୍), ରାଇମୋହନ ଦାସ (ଆଇ.ଏ.ଏସ୍) ନୀରାକାର ପୁରୋହିତ (ଡିଷ୍ଟ୍ରିକ୍ଟ ଜଜ୍, ବିଧାନସଭା ସେକ୍ରେଟେରୀ ଓ ମେମ୍ବର, ଓଡ଼ିଶା ଏଡମିନିଷ୍ଟ୍ରେଟିଭ ଟ୍ରାଇବୁନେଲ), ଡାଃ ବଂଶୀଧର ମହାନ୍ତି (ଅଧ୍ୟାପକ), ବେଣୁଧର ରାଉତ (ଅଧ୍ୟାପକ), ଜନକୀ ବଲ୍ଲଭ ମହାନ୍ତି (ଅଧ୍ୟାପକ), କୈଳାସ ଚନ୍ଦ୍ର ମିଶ୍ର (ଅତିରିକ୍ତ ଅର୍ଥ ସଚିବ), ଲକ୍ଷ୍ମୀଧର ମଲ୍ଲିକ (ଡିଷ୍ଟ୍ରିକ୍ ଜଜ୍ ଓ ପି.ଏସ୍.ସି. ମେମ୍ବର), ନରସିଂହ ନନ୍ଦ (ରାଜ୍ୟସଭା ସଦସ୍ୟ), ଜଗମୋହନ ତିହାଡି (ଡିଷ୍ଟ୍ରିକ୍ଟ ଜଜ), ମୁଁ ନିଜେ ଓ ଅନେକ ଭବିଷ୍ୟତ ଗଣ୍ୟମାନ୍ୟ ଓକିଲ, ଅଧ୍ୟାପକ ଓ ସରକାରୀ କର୍ମକର୍ତ୍ତା। ଏହି ବିବରଣୀରୁ ସେକାଳ ଓ ଏକାଳ ମଧ୍ୟରେ କେତେ ଯେ ତଫାତ, ତାହା ଜଣାପଡ଼ିବ। କହିବା ବାହୁଲ୍ୟ ମାତ୍ର, ମୟୁରଭଞ୍ଜ ସ୍ନାତକୋତ୍ତର ଛାତ୍ରାବାସ ସମ୍ଭବ ହୋଇପାରିଥିଲା କେବଳ ମହତାବଜୀଙ୍କ ଉଦ୍ୟମ ଯୋଗୁ।

ଶ୍ରୀ ଭଗବତ୍ ଦୟାଲ ଶର୍ମା ଓଡ଼ିଶାର ରାଜ୍ୟପାଳ ଥିବା ସମୟରେ ଜଗନ୍ନାଥ ଦର୍ଶନ ପାଇଁ ବରାବର ପୁରୀ ଯାଉଥିଲେ। ଜଗନ୍ନାଥ ମନ୍ଦିରର

ଆଭ୍ୟନ୍ତରୀଣ ଶାସନରେ ଅବହେଳା, ପୂଜା ଓ ଦୈନିକ ନୀତିରେ ବିଶୃଙ୍ଖଳା, ଶ୍ରୀମନ୍ଦିର ଓ ପାର୍ଶ୍ୱଦେଉଳମାନଙ୍କର ଭୁଙ୍ଗାରୁଜା ଅବସ୍ଥା, ରଥଯାତ୍ରା ଓ ବିଭିନ୍ନ ପର୍ବପର୍ବାଣୀର ଅହେତୁକ ବିଳମ୍ବ, ପଣ୍ଡାଙ୍କ ଯାତ୍ରୀ ଲୁଣ୍ଠନ ମନୋବୃତ୍ତି, ଅତି ବିଳମ୍ବରେ ବାହାରୁଥିବା ନିକୃଷ୍ଟ ଧରଣର ମହାପ୍ରସାଦ ଇତ୍ୟାଦି ଅବ୍ୟବସ୍ଥା ଯୋଗୁଁ, ରାଜ୍ୟପାଳ ଯେ କେବଳ ଅସନ୍ତୁଷ୍ଟ ନ ଥିଲେ, ମର୍ମାହତ ମଧ ଥିଲେ। ସେ ଚାହୁଁଥିଲେ, ଜଗତ ପ୍ରସିଦ୍ଧ ପୁରୁଷୋତ୍ତମ କ୍ଷେତ୍ର ଓ ଜଗନ୍ନାଥ ମନ୍ଦିର ତଥା ପୂଜା, ପାର୍ବଣ ରୀତି, ନୀତି ଓ ମହାପ୍ରସାଦ ଭୋଗ ଶୃଙ୍ଖଳିତ ହେଉ ଓ ବହୁ ତୀର୍ଥଯାତ୍ରୀ ଓ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରୁ। କିନ୍ତୁ ଅନେକ କାରଣବଶତଃ ତାହା ହୋଇପାରୁ ନଥିଲା ଓ ବହୁଚେଷ୍ଟା ସତ୍ତ୍ୱେ ଏପର୍ଯ୍ୟନ୍ତ ମଧ ହୋଇ ପାରି ନାହିଁ। ବହୁ କାର୍ଯ୍ୟ ତଥାପି ବାକୀ ଅଛି।

ତତ୍କାଳୀନ ସରକାର ଅବସରପ୍ରାପ୍ତ ବିଚାରପତି ବାଳକୃଷ୍ଣ ପାତ୍ରଙ୍କୁ ଏକକ କମିଶନ ଅଫ ଇନ୍‌କୁଆରୀ ରୂପେ ନିଯୁକ୍ତ କରି ଜଗନ୍ନାଥ ମନ୍ଦିର ସଂପର୍କୀୟ ପ୍ରତ୍ୟେକ ବିଷୟର ଉନ୍ନତିକଳ୍ପେ ରିପୋର୍ଟ କରିବା ପାଇଁ ନିଯୁକ୍ତି ଦେଇଥିଲେ। ପାତ୍ର କମିଶନ ବହୁ ଅଧୟନ କରି, ଅନେକ ସାକ୍ଷ୍ୟ ପ୍ରମାଣ ସଂଗ୍ରହ କରି ତାଙ୍କର ସୁଚିନ୍ତିତ ରିପୋର୍ଟ ସରକାରଙ୍କୁ ପ୍ରଦାନ କରିଥିଲେ। ଏହି ରିପୋର୍ଟରେ ଜଗନ୍ନାଥ ମନ୍ଦିରର ସର୍ବାଙ୍ଗୀନ ଉନ୍ନତି ପାଇଁ ଅନେକ ଉପାଦେୟ ପ୍ରସ୍ତାବ ଦିଆଯାଇଥିଲା। ପାତ୍ର କମିଶନ ନିଯୁକ୍ତି ବିଷୟରେ ସରକାର ରାଜ୍ୟପାଳଙ୍କୁ ଅବଗତ କରାଇଥିଲେ କି ନାହିଁ ଜଣାନାହିଁ, କିନ୍ତୁ ସେ ନିଜେ ଉପଲବ୍‌ଧି କଲେ ଯେ, ଓଡ଼ିଶାର ଜଣାଜୁଣା ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ନେଇ ଯଦି ଗୋଟିଏ କମିଟି ଗଢ଼ାଯାଇ ପାରିବ, ତେବେ କମିଟି ସଭ୍ୟମାନେ ନିଜ ନିଜ ବହୁ ଅଭିଜ୍ଞତାକୁ ଭିତ୍ତି କରି ଓ ଅନେକ ତଥ୍ୟ ଅଧୟନ କରି ଶ୍ରୀଜଗନ୍ନାଥ ଓ ତତ୍‌ସଂଲଗ୍ନ ପାର୍ଶ୍ୱ ମନ୍ଦିର, ରଥଯାତ୍ରା, ପର୍ବପର୍ବାଣୀ, ଯାତ୍ରୀ ଦର୍ଶନ, ଯାନିଯାତ୍ରା, ସମ୍ପତ୍ତି ରକ୍ଷାଣବେକ୍ଷଣ ଓ ମନ୍ଦିର ପରିବେଶର ଶୋଭା ବୃଦ୍ଧି ଇତ୍ୟାଦି ସମସ୍ତ ବିଷୟରେ ସୁଚିନ୍ତିତ ପ୍ରସ୍ତାବ ଦେଇ ପାରିବେ ଓ ସରକାର ମଧ ତାହା କାର୍ଯ୍ୟକାରୀ କଲେ ସାମୂହିକ କଲ୍ୟାଣ ସାଧିତ ହେବ। ଏଣୁ ରାଜ୍ୟପାଳଙ୍କ ପରାମର୍ଶ କ୍ରମେ ଗୋଟିଏ ଉଚ୍ଚ କ୍ଷମତାସଂପନ୍ନ କମିଟି ସରକାର ଗଠନ କଲେ, ଯାହା ଜଗନ୍ନାଥ ମନ୍ଦିର ସମ୍ପର୍କୀୟ ରାଜ୍ୟପାଳ କମିଟି ବୋଲି ସାଧାରଣରେ ଖ୍ୟାତ ହେଲା। ଏହି କମିଟିରେ ରାଜ୍ୟପାଳ

ନିଜେ ଅଧ୍ୟକ୍ଷ ରହିଲେ ଓ ଅନ୍ୟମାନଙ୍କ ମଧ୍ୟରେ ସଭ୍ୟ ରହିଲେ ମହତାବଜୀ, ବିଶ୍ୱନାଥ ଦାଶ, ରାଧାନାଥ ରଥ, ନିତ୍ୟାନନ୍ଦ କାନୁନଗୋ, ନନ୍ଦକିଶୋର ମିଶ୍ର, ଜଷ୍ଟିସ ହରିହର ମହାପାତ୍ର ଓ ମହନ୍ତ ଅଯୋଧ୍ୟା ଦାସ ଇତ୍ୟାଦି। ଅବସରପ୍ରାପ୍ତ ଆଇ.ଏ.ଏସ୍. ଅଫିସର ବିଭୂତି ଭୂଷଣ ତ୍ରିପାଠୀ ଏହି କମିଟିର ସେକ୍ରେଟେରୀ ହେଲେ। ୧୯୭୯ ମସିହା ଶେଷ ଭାଗରେ ରାଜ୍ୟପାଳ କମିଟି ତାଙ୍କ ପ୍ରଥମ ଓ ମୁଖ୍ୟ ରିପୋର୍ଟ ପ୍ରଦାନ କଲେ ରାଜଭବନ ମଧ୍ୟରେ ଏକ ଛୋଟ ଅଥଚ ମନୋଜ୍ଞ ପରିବେଶରେ। ସେଦିନ ରାଜ୍ୟପାଳଙ୍କ ମଧ୍ୟାହ୍ନ ଭୋଜନ ଆମନ୍ତ୍ରଣରେ କମିଟିରେ ସମସ୍ତ ସଭ୍ୟ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ ଉପସ୍ଥିତ ଥିଲେ। ରିପୋର୍ଟ କାର୍ଯକାରୀ କରିବାର ଭାର ଆଇନ ବିଭାଗ ଉପରେ ନ୍ୟସ୍ତ, କାରଣ ଏହି ବିଭାଗ ଜଗନ୍ନାଥ ମନ୍ଦିର ସର୍ବୋଚ୍ଚ ଶାସନ କର୍ତ୍ତା। ତେଣୁ ଆଇନ ବିଭାଗ ସଚିବ ଥିବା ହେତୁ ମୋତେ ମଧ୍ୟ ମଧ୍ୟାହ୍ନ ଭୋଜନରେ ଯୋଗ ଦେବାପାଇଁ ନିମନ୍ତ୍ରଣ ଆସିଥିଲା ଓ ମୁଁ ଯୋଗଦାନ କରିଥିଲି। ସେଦିନ ପ୍ରଥମ ଥର ପାଇଁ ବହୁ ଦିନ ପରେ ମହତାବଜୀଙ୍କ ସହ ମୋର ପ୍ରତ୍ୟେକ୍ଷ ଆଲୋଚନା ହୋଇଥିଲା। ଐତିହାସିକ ମହତାବ ସେହି ଭୋଜି ସଭାରେ ମୁଖ୍ୟମନ୍ତ୍ରୀଙ୍କୁ ଲକ୍ଷ୍ୟ କରି କହିଥିଲେ, ଗଜପତି ରାଜାମାନଙ୍କ ପ୍ରଧାନ ସେନାପତିମାନଙ୍କୁ ରାଉତରାୟ ବୋଲି କୁହାଯାଉଥିଲା ଓ ନୀଳମଣି ବାବୁ ମୁଖ୍ୟମନ୍ତ୍ରୀ ଥିବା ହେତୁ ସେ ରାଉତରାୟ ପଦବୀର ମର୍ଯ୍ୟାଦା ରକ୍ଷା କରି ରିପୋର୍ଟଟି କାର୍ଯକାରୀ କରିବା ପାଇଁ ତତ୍ପର ହେବେ। ରାଜ୍ୟପାଳ ଯଥାବିଧି ଉକ୍ତ ରିପୋର୍ଟଟିକୁ ମୁଖ୍ୟମନ୍ତ୍ରୀଙ୍କ ହସ୍ତରେ ଅର୍ପଣ କଲେ ଓ ତା'ପରେ ମୁଖ୍ୟମନ୍ତ୍ରୀ ତାହା ମୋତେ ସମର୍ପଣ କରି ଅନୁଧ୍ୟାନ ପରେ କାର୍ଯ୍ୟକାରୀ କରିବା ପାଇଁ ପରାମର୍ଶ ଦେଲେ। ଯଥା ସମୟରେ ସରକାର ରିପୋର୍ଟ ସଂପୂର୍ଣ୍ଣ ରୂପେ ଗ୍ରହଣ କରିନେଲେ ଓ ତାହା କାର୍ଯ୍ୟକାରୀ କରିବା ପାଇଁ ଆଇନ ବିଭାଗରେ କାର୍ଯ୍ୟାରମ୍ଭ ହେଲା।

୧୯୮୦ ମସିହା ବିଧାନସଭା ବଜେଟ ଅଧିବେଶନ ଚାଲିଥିବା ସମୟରେ ଜନତାପାର୍ଟି ମନ୍ତ୍ରିମଣ୍ଡଳର ଅବସାନ ହୋଇ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରି ହେଲା ଓ ରାଜ୍ୟପାଳ ଶାସନ ଭାର ଗ୍ରହଣ କଲେ। ସେ କିଛି ଦିନ ସଚିବାଳୟରେ ଅଫିସ କରି ବିଭିନ୍ନ ବିଭାଗର ସଚିବମାନଙ୍କ ସହ ପରାମର୍ଶ କରୁଥିଲେ। ଏହି ଅବସରରେ ସେ ମୋତେ କ୍ଷମତା ଓ ନିର୍ଦ୍ଦେଶ

ଦେଇଥିଲେ, ଜଗନ୍ନାଥ ମନ୍ଦିରର ସୁପରିଚାଳନାକଳ୍ପେ ନୂତନ ଦକ୍ଷ ଓ ଅଭିଜ୍ଞ କର୍ମଚାରୀଙ୍କୁ ନିଯୁକ୍ତି କରିବା ପାଇଁ। ତଦନୁଯାୟୀ ବଛା ବଛା ନୂତନ କର୍ମକର୍ତ୍ତା ନିଯୁକ୍ତି କରି, ରାଜ୍ୟପାଳ କମିଟି ରିପୋର୍ଟ କାର୍ଯକାରୀ କରିବା ପାଇଁ ଗୋଟାଏ ପରେ ଗୋଟାଏ କାମ ଆରମ୍ଭ ହେଲା। ସେତେବେଳେକୁ ଓଡ଼ିଶାରେ ନୂତନ କଂଗ୍ରେସ ସରକାର ଗଠନ ହୋଇ ସାରିଥାଏ ଓ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କଠାରୁ ଆଦେଶ ଆଣିଲି ଯେ ଯଦି ରିପୋର୍ଟ କାର୍ଯ୍ୟକାରୀ କରିବା ସମୟରେ ଦରକାର ପଡ଼େ ତେବେ ମୁଁ ଯେକୌଣସି ସଭ୍ୟଙ୍କ ସହ ପରାମ୍ରର୍ଶ କରିପାରିବି। ସେଥିପାଇଁ ମୁଁ କେତେଜଣ ସଭ୍ୟଙ୍କ ସହ ଫୋନ୍ ଯୋଗେ କଥାଭାଷା ହେଲି। ତାଙ୍କ ମଧ୍ୟରୁ ମହତାବଜୀ ଓ ଜଷ୍ଟିସ୍ ହରିହର ମହାପାତ୍ର ମୋ ସହ ପରାମର୍ଶ କରିବା ପାଇଁ ସମ୍ମତି ଦାନ କଲେ। ଏହା ପରେ ମହତାବଜୀଙ୍କ ଏକାମ୍ର ନିବାସ ବାସଭବନରେ ସାକ୍ଷାତ କରି ତାଙ୍କର ସୁଚିନ୍ତିତ ପରାମର୍ଶ ଗ୍ରହଣ କରିଥିଲି। ଏଠାରେ ଉଲ୍ଲେଖନୀୟ ଯେ, କେତେକ ପ୍ରସ୍ତାବ, ଯାହାକି ରାଜ୍ୟପାଳ କମିଟି ରିପୋର୍ଟରେ ଦର୍ଶାଇଥିଲେ, ଅବାସ୍ତବ ଓ ବ୍ୟୟବହୁଳ ଥିବା ହେତୁ ମୁଁ ବିରୋଧ କରିଥିଲି; ଯଥା-ତିରୁପତି ଭେଙ୍କଟେଶ୍ୱର ମନ୍ଦିର ସିଂହଦ୍ୱାରରେ ଅହରହ ନାଳରେ ନିର୍ମଳ ଜଳ ପ୍ରବାହ କରା ହେଉଅଛି। ଭକ୍ତଗଣ ଜଳରେ ପଦଧୌତ କରି ମନ୍ଦିର ପ୍ରବେଶ କରନ୍ତି। ରାଜ୍ୟପାଳ କମିଟି ଦର୍ଶାଇଥିଲେ; ଶ୍ରୀମନ୍ଦିର ସିଂହଦ୍ୱାରରେ ସେମିତି ଗୋଟାଏ ନିର୍ମଳ ଜଳ ନାଳ ପ୍ରବାହିତ ହେବ। ପାଖରେ ବଡ଼ଦାଣ୍ଡ କରରେ ଶୋଭା ବର୍ଦ୍ଧନ କରିବା ପାଇଁ ଗୋଟାଏ ଜଳର ଫୁଆରା ତିଆର ହୋଇ କାର୍ଯ୍ୟକାରୀ ହେବ। ଏହି ପ୍ରସ୍ତାବ କାର୍ଯ୍ୟକାରୀ କରିବା ସମ୍ଭବ କି ନୁହେଁ ତାହା ପରୀକ୍ଷା କରିବା ପାଇଁ ଓ ସବିଶେଷ ଆଲୋଚନା ପାଇଁ ତତ୍‌କାଳୀନ ପବ୍ଲିକ ହେଲ୍‌ଥ ଡିପାର୍ଟମେଣ୍ଟର ମୁଖ୍ୟ ଯନ୍ତ୍ରୀ ଶ୍ରୀ ଧୀରେନ୍ଦ୍ର ନାରାୟଣ ସିଂହଦେଓ ଓ ତାଙ୍କ ସହକାରୀ ଯନ୍ତ୍ରୀଙ୍କୁ ସଙ୍ଗରେ ଧରି ପୁରୀ ଗଲି। ମୁଖ୍ୟଯନ୍ତ୍ରୀ ଅନୁଧ୍ୟାନ କରି କହିଲେ ବଡଦାଣ୍ଡରେ ପାଣି ନାଳ ବ୍ୟବସ୍ଥା କରିବା ସହଜ ଓ ସୁବିଧାଜନକ ହେବ ନାହିଁ, କାରଣ ଯଦିଓ ନାଳ ସାହାଯ୍ୟରେ ଜଳ ଆଣାଯାଇ ପାରିବ, ତାହା ନିଷ୍କାସନ କରିବା ପାଇଁ ଉପାୟ ନାହିଁ। ତାହା କରିବାକୁ ହେଲେ ମାଇଲ ମାଇଲ ଧରି ନାଳ ଖୋଳିବାକୁ ହେବ ଓ ସେଥିପାଇଁ ବ୍ୟୟ ଏତେ ଅଧିକ ହେବ ଯେ ମନ୍ଦିର ତହବିଲ ତାହା ଦେଇପାରିବ ନାହିଁ। ଜଳର

ଫୁଆରା ପାଇଁ ମଧ୍ୟ ସ୍ଥାନାଭାବ ହେବ । ଉପସ୍ଥିତ ଭଦ୍ରବ୍ୟକ୍ତି, ମନ୍ଦିର ପରିଚାଳନା କମିଟିର କେତେକ ସଭ୍ୟ ଓ କେତେକ ପୁରୁଖା ସେବାୟତ ମତବ୍ୟକ୍ତ କଲେ ଯେ ପାଣି ନାଳ ହେଲେ, ସିଂହଦ୍ୱାରର ସୌନ୍ଦର୍ଯ୍ୟ ନଷ୍ଟ ହେବ, ଶ୍ରୀମନ୍ଦିର ସମ୍ମୁଖଭାଗ ସବୁବେଳେ ଓଦା ହେବ ଓ ଅପରିଷ୍କାର ରହିବ; ମନ୍ଦିର ଭିତର ଅଂଶ ମଧ୍ୟ ଓଦା, ଅପରିଷ୍କାର ଓ ପିଚ୍ଛିଳ ରହିବ ଯଦ୍ଦ୍ୱାରା ଯାତ୍ରୀ ଚଟାଣ ଉପରେ ପଡିଯାଇ କ୍ଷତବିକ୍ଷତ ହେବେ ଓ ମନ୍ଦିର ପ୍ରାଙ୍ଗଣରେ ରକ୍ତ ପଡ଼ିବ, ତା'ହେଲେ ଭୋଗ ମାରା ହୋଇ ମନ୍ଦିର ଶୋଧ ହେବ । ରଥଯାତ୍ରା ସମୟରେ ଠାକୁରଙ୍କ ପହଣ୍ଡି ବିଜୟ ପାଇଁ ମହା ଅସୁବିଧା ଦେଖାହେବ ଓ ସର୍ବୋପରି, ଭକ୍ତଜନ ଧୂଳିଆ ପାଦରେ ମନ୍ଦିର ପ୍ରବେଶ କରି ଠାକୁର ଦର୍ଶନ କରିବା ସମ୍ଭବ ହେବ ନାହିଁ। ଏହିସବୁ ପର୍ଯ୍ୟାଲୋଚନା ମୋ ମନକୁ ପାଇଲା । ସରକାରଙ୍କୁ ଫାଇଲ ପେଶ୍ କରିବା ପୂର୍ବରୁ ମୁଁ ମହତାବଜୀ ଓ ଜଷ୍ଟିସ୍ ହରିହର ମହାପାତ୍ରଙ୍କୁ ଭେଟି ଏହିସବୁ ଅସୁବିଧା ବିଷୟ ଆଲୋଚନା କଲି ଓ ସେମାନେ ମୋ ସଙ୍ଗେ ଏକମତ ହେଲେ ଯେ ଏହି ପ୍ରସ୍ତାବଟି କାର୍ଯ୍ୟକାରୀ କରିବା ସମ୍ଭବ ନୁହେଁ। ମୁଁ ଯେତେବେଳେ ମଧ୍ୟ ମହତାବଜୀଙ୍କ ସହ ପରାମର୍ଶ ପାଇଁ ଦେଖା କରିଛି, ସେ ଆଗ୍ରହର ସହ ବହୁ ଆଲୋଚନା କରୁଥିଲେ ଓ ମୋତେ ଉତ୍ସାହିତ କରୁଥିଲେ ।

ଭୁବନେଶ୍ୱର ଅଞ୍ଚଳ ଥିଲା ଶ୍ରୀ ଲିଙ୍ଗରାଜ ମହାପ୍ରଭୁଙ୍କ ଜମିଦାରୀ (estate) । ଜମିଦାରୀ ଉଚ୍ଛେଦ ସମୟରେ ତତ୍କାଳୀନ ପରିଚାଳନା କମିଟି ତଥା ମନ୍ଦିର ପରିଚାଳକ ଜମିଦାରୀ ଉଚ୍ଛେଦ ଆଇନର କେତେକ ନିୟମ ଅନୁଯାୟୀ ଭୁବନେଶ୍ୱର ଅନ୍ତର୍ଗତ ଜମି ସବୁକୁ Trust Estate ଘୋଷଣା କରିବା ପାଇଁ ଅଦାଲତରେ ବୋଧହୁଏ କାର୍ଯ୍ୟାନୁଷ୍ଠାନ ନ କରିବାରୁ, ସମସ୍ତ ଜମି ସରକାରଙ୍କ ଖାସ ଦଖଲକୁ ଚାଲିଗଲା । ତତ୍ ମଧ୍ୟରୁ ପ୍ରାୟ ଚାରି ଏକର ଜମି ସରକାର ଭୁବନେଶ୍ୱର Housing Board କୁ ଗୃହନିର୍ମାଣ ପାଇଁ ଦଖଲ ଦେଲେ । ଉକ୍ତ ଜମି ପାଇଁ ପ୍ରାୟ ଚାରିଲକ୍ଷ ପଞ୍ଚାନବେ ହଜାର ଟଙ୍କା Housing Board କର୍ତ୍ତୃପକ୍ଷ ସରକାରଙ୍କ ତହବିଲ୍‌ରେ ଜମା ଦେଲେ । ମନ୍ଦିର କର୍ତ୍ତୃପକ୍ଷ ସେହି ଟଙ୍କା ଦାବି କଲେ ନାହିଁ। ଏହି ସମୟରେ ମନ୍ଦିରର ଆଭ୍ୟନ୍ତରୀଣ ଅବସ୍ଥା ଶୋଚନୀୟ ହୋଇପଡିଥିଲା । ଏପରିକି ପ୍ରତିଦିନର ସେବାପୂଜା ଓ ଭୋଗରାଗ ପାଇଁ ଟଙ୍କା ନଥାଏ । କେତେକ ଭୋଗର ବ୍ୟବସ୍ଥା

ଯାହାକି ବହୁ ପୂର୍ବରୁ ପ୍ରଚଳିତ ଥିଲା, ତାହା ବନ୍ଦ ହୋଇଯାଇଥିଲା। ମନ୍ଦିର ଅବସ୍ଥାର ଉନ୍ନତି କରିବା ପାଇଁ ମୁଁ ଆଇନ ସଚିବ ଭାବେ ଅଧୀନସ୍ଥ ଦେବୋତ୍ତର କମିଶନରଙ୍କୁ ମନ୍ଦିର ପରିଚାଳନା କମିଟି ନୂତନ ଭାବେ ଗଢ଼ିବା ପାଇଁ ପରାମର୍ଶ ଦେଲି। ତଦନୁଯାୟୀ ନୂତନ କମିଟି ଗଢ଼ା ହେଲା ଓ ତହିଁରେ ଭୁବନେଶ୍ୱରସ୍ଥିତ ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ସଭ୍ୟ ଭାବେ ଗ୍ରହଣ କରାଗଲା। ନୂତନ କମିଟିର ସଭ୍ୟମାନଙ୍କ ମଧ୍ୟରେ ଥିଲେ ଜଟଣୀ ବିଧାୟକ ସୁରେଶ ରାଉତରାୟ, ସତ୍ୟପ୍ରିୟ ମହାନ୍ତି ଓ ଗୁଣନିଧି ମହାପାତ୍ର ଇତ୍ୟାଦି। ମନ୍ଦିରର ଦୈନିକ ସୁପରିଚାଳନା ପାଇଁ ଜଣେ ଅଭିଜ୍ଞ ଡେପୁଟୀ ମାଜିଷ୍ଟ୍ରେଟ ଶ୍ରୀ ମହେଶ୍ୱର ମିଶ୍ରଙ୍କୁ Executive Officer ଭାବେ ନିଯୁକ୍ତ କରାଗଲା। ଅତି ସୁଖର ବିଷୟ, ନୂତନ ସଭ୍ୟମାନେ ଓ ମହେଶ୍ୱରବାବୁ ଅତି ସୁଚାରୁରୂପେ ମନ୍ଦିର ପରିଚାଳନା କଲେ। ଧୀରେ ଧୀରେ ମନ୍ଦିରର ଆୟବୃଦ୍ଧି ହେଲା ଓ ଭୋଗରାଗ ପାଇଁ ଦୋକାନରୁ ଧାର ସୂତ୍ରେ ଚାଉଳ, ଡାଲି, ପନିପରିବା, ଅଟା ଓ ଗୁଡ ଇତ୍ୟାଦି ଖରିଦ କରିବାକୁ ପଡିଲା ନାହିଁ। ଏହି ସବୁର ମୂଳରେ ଥିଲା ମହତାବଜୀଙ୍କ ସୁଚିନ୍ତିତ ପରାମର୍ଶ। ଅନେକ ସମୟରେ ସେ ଏକାମ୍ର ନିବାସରେ ଲିଙ୍ଗରାଜ ମନ୍ଦିର ଉନ୍ନତି ପାଇଁ ଗଭୀର ଚିନ୍ତା କରୁଥିଲେ ଓ ମନ୍ଦିର ପରିଚାଳନା କମିଟିର ସଦସ୍ୟ ସୁରେଶ ରାଉତରାୟ, ସତ୍ୟପ୍ରିୟ ମହାନ୍ତି ଓ ଗୁଣନିଧି ମହାପାତ୍ରଙ୍କ ସହ ଆଲୋଚନା କରୁଥିଲେ। ତାଙ୍କଠାରୁ ଡାକରା ପାଇ ମୁଁ ମଧ୍ୟ କେତେକ ଆଲୋଚନାରେ ଭାଗନେବା ପାଇଁ ସୁଯୋଗ ପାଇଥିଲି।

ଦିନେ ମୁଁ ଅଫିସରେ ଥିବା ସମୟରେ ସୁରେଶ ରାଉତରାୟ ମୋ ପାଖକୁ ଆସିଲେ କିମ୍ବା ଫୋନ୍ ଯୋଗେ ଜଣାଇଲେ ଯେ, ଚାରିଲକ୍ଷ ପଞ୍ଚାନବେ ହଜାର ଟଙ୍କା ଯାହାକି ସରକାରୀ ତହବିଲରେ ଜମା ଥିଲା ପ୍ରକୃତରେ ଲିଙ୍ଗରାଜ ମହାପ୍ରଭୁଙ୍କ ପ୍ରାପ୍ୟ। ତାଙ୍କଠାରୁ ଏହା ଶୁଣିବା ପରେ ମୁଁ ଫାଇଲ କାର୍ଯ୍ୟ ଆରମ୍ଭ କଲି। ରାଜସ୍ୱ ଓ ଅର୍ଥ ବିଭାଗରୁ ସବୁ ତଥ୍ୟ ସଂଗ୍ରହ କଲି। ପ୍ରକୃତରେ ଟଙ୍କା ଜମା ଥିଲା, କିନ୍ତୁ କେହି କେବେ ସୁଦ୍ଧା ସେହି ଟଙ୍କା ଲିଙ୍ଗରାଜ ମହାପ୍ରଭୁଙ୍କ ପ୍ରାପ୍ୟ ବୋଲି ବିଷୟ ଉତ୍ଥାପନ କରି ନଥିଲେ। ଏହି ବିଷୟ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଅଣାଗଲା। ମୋର ମନେ ହୁଏ ମହତାବଜୀ ନିଜେ କିମ୍ବା ସୁରେଶ ରାଉତରାୟଙ୍କ ଜରିଆରେ ଏହି ବିଷୟ ତାଙ୍କୁ ଅବଗତ କରାଇଥିଲେ। ଦିନେ ମୋତେ ମୁଖ୍ୟମନ୍ତ୍ରୀ ତାଙ୍କ ସଚିବାଳୟ ଅଫିସକୁ ଡକାଇ

ଏହି ବିଷୟରେ ଆଲୋଚନା କଲେ। ମୁଁ ମତଦେଲି ଯେ ଏହି ସମସ୍ତ ଟଙ୍କା ଲିଙ୍ଗରାଜ ମହାପ୍ରଭୁ ପାଇବା ପାଇଁ ହକ୍‌ଦାର ହୋଇଥା'ନ୍ତେ, ଯଦି ଉପଯୁକ୍ତ ସମୟରେ ଜମିଦାରୀ ଉଚ୍ଛେଦ ଆଇନ ଅନୁଯାୟୀ ତତ୍କାଳୀନ ମନ୍ଦିର ପ୍ରଶାସନ ଜମିକୁ Trust Estate ବୋଲି ଘୋଷଣା କରିବା ପାଇଁ ଅଦାଲତରେ ଆବେଦନ କରିଥା'ନ୍ତେ। ତଥାପି ବର୍ତ୍ତମାନ ସୁଦ୍ଧା ସରକାର ମନ୍ଦିରର ଆର୍ଥିକ ଅଭାବ ଦୃଷ୍ଟି ଓ ସର୍ବାଙ୍ଗୀନ ଉନ୍ନତି କଳ୍ପେ ସର୍ବମୋଟ ପାଞ୍ଚଲକ୍ଷ ଟଙ୍କା ଦାନ ସୂତ୍ରରେ ଦେଲେ କୌଣସି ଆଇନଗତ ଅସୁବିଧା ହେବନାହିଁ। ଅନ୍ୟପକ୍ଷରେ ଏହି ପୁରାତନ ଓ ବିଶ୍ୱବିଖ୍ୟାତ ମନ୍ଦିରରେ ଗୋଟାଏ ପାଣ୍ଠି ସୃଷ୍ଟି ହେବ। ମୁଖ୍ୟମନ୍ତ୍ରୀ ମୋର ପରାମର୍ଶ ବିନା ସଙ୍କୋଚରେ ଗ୍ରହଣ କରିନେଲେ ଓ ପାଞ୍ଚଲକ୍ଷ ଟଙ୍କା ସରକାରୀ ଅନୁଦାନ ରୂପେ ଦେବାପାଇଁ ବିଧିମତେ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ନିର୍ଦ୍ଦେଶ ଦେଲେ। ଅବିଳମ୍ବେ ଏହି ନିର୍ଦ୍ଦେଶ କାର୍ଯ୍ୟକାରୀ ହେଲା ଓ ପାଞ୍ଚଲକ୍ଷ ଟଙ୍କାର ଗୋଟାଏ ଚେକ ପ୍ରସ୍ତୁତ କରାଗଲା। ଗୋଟାଏ ନିର୍ଦ୍ଦିଷ୍ଟ ଦିନ ଲିଙ୍ଗରାଜ ମନ୍ଦିର ସିଂହଦ୍ୱାର ନିକଟରେ ଗୋଟାଏ ସଭାର ଆୟୋଜନ ହେଲା। ସଭାରେ ଉପସ୍ଥିତ ଥିଲେ ମହତାବଜୀ, ମୁଖ୍ୟମନ୍ତ୍ରୀ, ସତ୍ୟପ୍ରିୟ ମହାନ୍ତି, ଆଇନ ବିଭାଗ ମନ୍ତ୍ରୀ, ଦେବୋତ୍ତର କମିଶନର ଓ ଅନ୍ୟାନ୍ୟ ବହୁ ବିଶିଷ୍ଟ ବ୍ୟକ୍ତି ଓ ଜନସାଧାରଣ। ଏହି ସଭାସ୍ଥଳରେ ମୁଖ୍ୟମନ୍ତ୍ରୀ ପାଞ୍ଚଲକ୍ଷ ଟଙ୍କାର ଚେକଟି ମନ୍ଦିର କର୍ତ୍ତୃପକ୍ଷଙ୍କୁ ହସ୍ତାନ୍ତର କରିଥିଲେ। ଏହି ସଭାରେ ଉଦ୍‌ବୋଧନ ଦେଇ ମହତାବଜୀ ଏହି ସରକାରୀ ଅନୁଦାନ ପାଇଁ ନିଜର ପ୍ରସନ୍ନତା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ମନ୍ଦିରର ଉତ୍ତରୋତ୍ତର ଉନ୍ନତି କାମନା କରିଥିଲେ। ଏହି ଅର୍ଥ ବ୍ୟାଙ୍କରେ ଜମା ରଖାଗଲା। କିଛି ଦିନ ପରେ ଲିଙ୍ଗରାଜ ମନ୍ଦିରରେ ମହତାବଜୀଙ୍କ ଦ୍ୱାରା ହୁଣ୍ଡି ସ୍ଥାପନ ମଧ୍ୟ କରାଗଲା। ସମସ୍ତେ କହିଲେ ବହୁ ବର୍ଷ ପରେ ଗୋଟାଏ ନୂଆ କଥା ହେଲା, କାରଣ ମନ୍ଦିର ମଧ୍ୟକୁ ନ ଯିବା ଲୋକ, ଅର୍ଥାତ୍ ମହତାବଜୀ ଲିଙ୍ଗରାଜ ମନ୍ଦିର ପରିଦର୍ଶନ କଲେ। କହିବା ବାହୁଲ୍ୟ ମାତ୍ର, ଶୂନ ତହବିଲ୍‌ରୁ ଧୀରେ ଧୀରେ ଲକ୍ଷାଧିକ ଟଙ୍କା ହୁଣ୍ଡି ଓ ଅନ୍ୟ ବାବଦରେ ଆଦାୟ ହୋଇ ଜମା ହେଲା। ମନ୍ଦିରର ସେବା ପୂଜା, ରୀତିନୀତି, ଭୋଗରାଗ ଓ ପର୍ବପର୍ବାଣୀ ସୁରାରୂରୂପେ ସମ୍ପନ୍ନ ହେବାକୁ ଲାଗିଲା। ମନ୍ଦିର ବେଢାରେ ଉଜ୍ଜ୍ୱଳ ଆଲୋକର ବ୍ୟବସ୍ଥା ହେଲା। ମନ୍ଦିର ବେଢା ଓ ଚତୁଃପାର୍ଶ୍ୱରୁ ଜଙ୍ଗଲ ସଫା ହେଲା ଓ ଯାହା

ସୃଷ୍ଟି କରାଗଲା ଓ ମହେଶ୍ୱର ମିଶ୍ରଙ୍କୁ ମନ୍ଦିରର ପରିଚାଳନା ଦାୟିତ୍ୱ ଦିଆଗଲା। କହିବା ବାହୁଲ୍ୟ ମାତ୍ର ଏହି ସବୁ କାର୍ଯ୍ୟାନୁଷ୍ଠାନ ପାଇଁ ମହତାବଜୀଙ୍କ ପ୍ରଚ୍ଛନ୍ନ ନିର୍ଦ୍ଦେଶ କାର୍ଯ୍ୟ କରୁଥିଲା।

ଶ୍ରୀ ଭାଗବତ ଦୟାଲ ଶର୍ମା ମଧ୍ୟପ୍ରଦେଶ ରାଜ୍ୟପାଳ ରୂପେ ବଦଳି ହେଲେ ଓ ତାଙ୍କ ସ୍ଥାନରେ ଶ୍ରୀ ସି.ଏମ୍.ପୁନାଚା ଓଡ଼ିଶା ରାଜ୍ୟପାଳ ଭାବେ ଯୋଗଦାନ କଲେ। ବୋଧହୁଏ ଶ୍ରୀ ପୁନାଚାଙ୍କ ସମ୍ମାନରେ ମହତାବଜୀ ଏକାମ୍ର ନିବାସରେ ମଧ୍ୟାହ୍ନ ଭୋଜନର ଆୟୋଜନ କଲେ। ଦିନେ ତାଙ୍କଠାରୁ ଉକ୍ତ ଭୋଜନରେ ଯୋଗଦାନ କରିବା ପାଇଁ ନିମନ୍ତ୍ରଣ ପାଇଲି ଓ ଯଥା ସମୟରେ ଏକାମ୍ର ନିବାସରେ ଉପସ୍ଥିତ ହେଲି। ଅନ୍ୟାନ୍ୟ ଅତିଥି ଥିଲେ ଜଷ୍ଟିସ ହରିହର ମହାପାତ୍ର, ରାଜସ୍ୱମନ୍ତ୍ରୀ କାହ୍ନୁଚରଣ ଲେଙ୍କା ଇତ୍ୟାଦି। ଆଇନ ବିଭାଗ ମନ୍ତ୍ରୀ କୃଷ୍ଣ ଚରଣ ପଟ୍ଟନାଏକ ନିମନ୍ତ୍ରିତ ହୋଇଥିଲେ ସୁଦ୍ଧା କୌଣସି କାରଣବଶତଃ ଉପସ୍ଥିତ ହୋଇପାରିଲେ ନାହିଁ। ଭୋଜନ କକ୍ଷରେ ପ୍ରଧାନ ଆଲୋଚ୍ୟ ବିଷୟ ଥିଲା ଜଗନ୍ନାଥ ମନ୍ଦିରର ସର୍ବାଙ୍ଗୀନ ଉନ୍ନତି, ମନ୍ଦିର ସମ୍ପତ୍ତିର ଉପଯୁକ୍ତ ରକ୍ଷଣାବେକ୍ଷଣ, ଓ ଓଡ଼ିଶା ଓ ଓଡ଼ିଶା ବାହାରେ ଥିବା ଠାକୁର ସମ୍ପତ୍ତିର ପୁନରୁଦ୍ଧାର, ଯାତ୍ରୀ ସୁବିଧା, ମହାପ୍ରସାଦ ଭୋଗର ମାନବୃଦ୍ଧି ଓ ମୂଲ୍ୟ ନିୟନ୍ତ୍ରଣ ଓ ଦେଶରେ ଥିବା ଅନ୍ୟାନ୍ୟ ପୁରାତନ ମନ୍ଦିରର ଉନ୍ନତି। ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ମହତାବଜୀ ଅନେକ ସମୟରେ ଗଭୀର ଭାବେ ଏ ଦେଶର ଗର୍ବ ଚାରୁକଳାପୂର୍ଣ୍ଣ ମନ୍ଦିରମାନଙ୍କର ରକ୍ଷଣାବେକ୍ଷଣ ଓ ଉନ୍ନତି ପାଇଁ ଚିନ୍ତା କରୁଥିଲେ ଓ କର୍ମକର୍ତ୍ତା ମାନଙ୍କୁ ଉତ୍ସାହିତ କରୁଥିଲେ।

ଅନେକେ ମନେ କରନ୍ତି ଯେ, ମହତାବଜୀ ଆଦୌ ଈଶ୍ୱର ବିଶ୍ୱାସୀ ନ ଥିଲେ। ଜଗନ୍ନାଥ ମନ୍ଦିରର ଅନେକ ସେବାୟତ କହୁଥିଲେ, ସେ କେବେ ସୁଦ୍ଧା ଜଗନ୍ନାଥ ଦର୍ଶନ ପାଇଁ ଆସୁ ନଥିଲେ, ତେଣୁ ଧର୍ମ ସଙ୍ଗେ ତାଙ୍କର କୌଣସି ସମ୍ପର୍କ ନଥିଲା। ତାଙ୍କ ସମ୍ପର୍କରେ ସାଧାରଣ ଲୋକଙ୍କ ଏହି ପ୍ରକାର ଧାରଣାର ମୁଖ୍ୟ କାରଣ ବୋଧହୁଏ ଥିଲା ଯେ, ମହତାବଜୀ ମନ୍ଦିର ବା ଠାକୁର ଦର୍ଶନ ପ୍ରକାଶ୍ୟ ଭାବରେ କରୁ ନଥିଲେ। ତାଙ୍କ ପରି ଜଣେ ସର୍ବଭାରତୀୟ କଂଗ୍ରେସ ଓ ରାଜନୈତିକ ନେତାଙ୍କ ପକ୍ଷରେ ଏହା ସ୍ୱାଭାବିକ ଥିଲା। କଂଗ୍ରେସ ଗୋଟାଏ ଧର୍ମ ନିରପେକ୍ଷ ରାଜନୈତିକ ଅନୁଷ୍ଠାନ। ଏ ଦେଶର ସମ୍ବିଧାନରେ ସ୍ପଷ୍ଟ ଭାବରେ ଉଲ୍ଲେଖିତ ଅଛି ଯେ, ଭାରତ ଗୋଟାଏ

ଧର୍ମ ନିରପେକ୍ଷ ସମାଜବାଦୀ ସାର୍ବଭୌମ୍ୟ ରାଷ୍ଟ୍ର । ଏଠାରେ ମଧ୍ୟ ସ୍ମରଣ କରାଯାଇପାରେ ଯେ, ମହାତ୍ମାଗାନ୍ଧୀ ଜଗନ୍ନାଥ ଦର୍ଶନ କରିବା ପାଇଁ ସ୍ପଷ୍ଟ ମନା କରିଦେଇଥିଲେ, କାରଣ ସେତେବେଳେ ମନ୍ଦିର ମଧ୍ୟରେ ହରିଜନ ପ୍ରବେଶ ନିଷେଧ ଥିଲା । ତାଙ୍କ ଅଜାଣତରେ କସ୍ତୁରବା ଶ୍ରୀମନ୍ଦିର ଦର୍ଶନ କରିଯାଇଥିବାରୁ ଗାନ୍ଧିଜୀ କ୍ଷୁବ୍ଧ ହୋଇଥିଲେ ଓ କସ୍ତୁରବାଙ୍କୁ ସେଥିପାଇଁ କ୍ଷମା ପ୍ରାର୍ଥନା କରିବାକୁ ପଡ଼ିଥିଲା । ପଣ୍ଡିତ ନେହେରୁ ମଧ୍ୟ ଦେଶର ପ୍ରଧାନମନ୍ତ୍ରୀ ରୂପେ ଜଗନ୍ନାଥ ମନ୍ଦିର ପ୍ରବେଶ ପାଇଁ ଇଚ୍ଛୁକ ନ ଥିଲେ, କିନ୍ତୁ ମନ୍ଦିରର କଳାକୃତି ଦେଖିବାପାଇଁ ନେତୃବୃନ୍ଦଙ୍କ ଅନୁରୋଧ କ୍ରମେ ମନ୍ଦିର ଦର୍ଶନ ପାଇଁ ସମ୍ମତ ହୋଇଥିଲେ । ହୁଏତ ଏସବୁ କାରଣ ଯୋଗୁଁ ମହତାବଜୀ ମନ୍ଦିର, ମଠ ଓ ଦେବଦେବୀ ଦର୍ଶନ ପ୍ରକାଶ୍ୟରେ କରିବା ପାଇଁ କୁଣ୍ଠାବୋଧ କରୁଥିଲେ । କିନ୍ତୁ ଗୃହରେ ସେ ପ୍ରତିଦିନ ଧ୍ୟାନ କରିବା ସାଧାରଣ ଥିଲା । ତା'ପରେ ଯାଇ ସେ ନିଜ ଅଫିସ ପ୍ରକୋଷ୍ଠରେ ସର୍ବସାଧାରଣଙ୍କୁ ଭେଟିବା ପାଇଁ ବସୁଥିଲେ ।

ଏହି ଅସାଧାରଣ ବ୍ୟକ୍ତିତ୍ୱର ଗୋଟିଏ ଦିଗ ବିଷୟରେ ଯାହା ସବୁ ଅନୁଭବ ମୋର ଥିଲା, ସେସବୁ ଲିପିବଦ୍ଧ କରିଗଲି ଭବିଷ୍ୟତ ଇତିହାସ ପାଇଁ ।

ପୂର୍ବତନ ବିଚାରପତି, ଓଡ଼ିଶା ହାଇକୋର୍ଟ
କନିକା ରାଜବାଟୀ ଛକ, କଟକ



## ସ୍ମୃତି ଓ ଅନୁଭୂତିର ତରଙ୍ଗମାଳା

### ରାଜକିଶୋର ରାୟ

[illegible]

ମୋର ଆମ୍ବାର କାକୁତିକୁ ଯଥାର୍ଥରେ ରୂପଦାନ କରିଥିଲେ [illegible] ମତେ ଆବିଷ୍କାର କରିପାରିଥିଲେ [illegible]

ମଣିଷ ଗଢ଼ିବା ଓ ଅନୁଷ୍ଠାନ ତୋଳିବା ତାଙ୍କର ସଧର୍ମ ଥିଲା। [illegible] ମଣିଷଟିଏ ନୀଡ ବାନ୍ଧିବା ପୂର୍ବରୁ [illegible] ପଠାଇ ଦେଲେ ସମ୍ବଲପୁର କଲେଜକୁ। ମୋର କ୍ଷୁବ୍ଧ ହେବା ସ୍ୱାଭାବିକ। ହୋଇଥିଲି ମଧ୍ୟ। ମୁଁ ତାଙ୍କୁ ସେତେବଳେ ବୁଝିପାରି ନଥିଲି। ସେ ମୁଖ୍ୟମନ୍ତ୍ରୀ। ଆଦେଶ ଅଲଙ୍ଘନୀୟ।

ମୋର ବିଦ୍ରୋହର ଉତ୍ତାପ ପ୍ରଶମିତ ହୋଇଗଲା ଯେତେବେଳେ ସେ ବୁଝେଇ ଦେଲେ — ରାଜକିଶୋର, ତୁମକୁ ମୁଁ ସମ୍ବଲପୁର ପଠାଉଛି, ମୋର ରାଜନୈତିକ ଜୀବନର ଗୋଟାଏ ଝଡଝଞ୍ଜାକୁ କିଛି ପରିମାଣରେ ତୁମେ ପ୍ରଶମିତ କରିପାରିବ। ତୁମର ବହୁ ବନ୍ଧୁ ସମ୍ବଲପୁର ଅଞ୍ଚଳରେ ଅଛନ୍ତି। ସ୍ଥାନୀୟ ସଂସ୍କୃତି ଓ ଚଳଣୀରେ ତୁମେ ସେମାନଙ୍କର ସ୍ନେହଭାଜନ, ମୁଁ ଜାଣେ। ଦେଖ, ହୀରାକୁଦ ବନ୍ଧ ଆନ୍ଦୋଳନ କ୍ରମେ ତୀବ୍ରତର ହେଉଛି। କଲେଜ ପରିସର ଓ ବାହାରେ ତୁମେ କିପରି କାର୍ଯ୍ୟ କରିବ, ମୁଁ ତୁମକୁ ଜଣାଇବି। ପଶ୍ଚିମ ଓଡ଼ିଶାରେ ଏହି ବନ୍ଧ ପାଇଁ ଯେଉଁ ଆନ୍ଦୋଳନ, ତାହା ଯେତେ ରାଜନୈତିକ ନୁହେଁ, ତଦପେକ୍ଷା ସାଂସ୍କୃତିକ। ଏହି ଦିଗଟାକୁ ତୁମେ

ଦୃଷ୍ଟି ଦେବି।

ସ୍ୱର୍ଗତଃ ଘନଶ୍ୟାମ ଦାଶ ଅଧ୍ୟକ୍ଷ ସେତେବେଳେ। ସଭା ସମିତି ମାଧ୍ୟମରେ ସଂସ୍କୃତି ଓ ସମ୍ବଲପୁରୀ ଚିକଣୀର ବିସ୍ତୃତ ଆଲୋଚନା ଏବଂ ଭାଷାର ମୌଳିକତା ଉପରେ ଅନବଦ୍ୟତା ସଂପର୍କରେ ଲେଖା ଓ ବକ୍ତୃତାରେ କିଛିଟା କାର୍ଯ୍ୟ କରାଗଲା।

ରେଭେନ୍ସା କଲେଜ ପୂର୍ବ ଛାତ୍ରାବାସରେ ମୁଁ ସାଥୀ ଭାବରେ ପାଇଥିଲି (୧୯୩୦-୧୯୩୭) ଶ୍ରଦ୍ଧାକର, ମୁରାରୀ, ରାଙ୍କାରାମ, ଶଶିଭୂଷଣ ଓ ଅନେକ ସମ୍ବଲପୁରୀ ସତୀର୍ଥ।

ହୀରାକୁଦ ବନ୍ଧ ଆନ୍ଦୋଳନ ପ୍ରଶମିତ ହୋଇ ଆସିଲା। ମୁଁ ବଦଳି ହୋଇ ଆସିଲି ପୁରୀକୁ। ତା ପରେ ଅନ୍ୟ ସ୍ଥାନକୁ।

ମୁଁ ସାମାନ୍ୟ ଅନାମଧେୟ ଓଡ଼ିଶା ଅଧ୍ୟାପକଟିଏ। ମୋ ଉପରେ ଦୃଷ୍ଟି ନିବଦ୍ଧ କରିବା ଅର୍ଥ ମହତାବ ଦୃଷ୍ଟିର ପ୍ରଖରତା ଓ ତୀକ୍ଷ୍ଣ ଦୂରଦର୍ଶିତାର ପରିଚୟ ଏଥିରୁ ମିଳିଥାଏ।

ବସିବାକୁ ଆସନ ନାହିଁ, କିଛି ଲେଖିବାକୁ କାଗଜ ନାହିଁ, ପିନ କଣ୍ଟାଟିଏବି ଅଜାଡ଼ି। ମୁଁ ରହିବି କେଉଠି, ତାର ବିଚାର ନାହିଁ, ଅଥଚ ଦରିଆରେ ଏକ ପ୍ରକାର ନିକ୍ଷିପ୍ତ ଜୀବିଟିଏ ମତେ ଅଧ୍ୟାପନାର ଆଣି ଶୂନ୍ୟ ଏକ ଶ୍ରେଣୀରେ ରଖିଦେଲେ ଡକ୍ଟର ମହତାବ। ଶହ ଶହ ସଂଖ୍ୟାରେ କର୍ମଚାରୀ ଥିଲେ, କାହାକୁ ବାଛିଲେ ନାହିଁ, ମୋରି ଉପରେ ସନ୍ଦେହ ନିର୍ଭରତା ତାଙ୍କର।

ହେଉଛି ୧୯୫୬-୫୭ ର କଥା। ବାଚସ୍ପତି ଥାଆନ୍ତି ପଣ୍ଡିତ ନୀଳକଣ୍ଠ ଦାସ। ଲୋକସଂପର୍କ ଅଧ୍ୟକ୍ଷ ଥା'ନ୍ତି ସ୍ୱର୍ଗତ ସୁଧୀର ଘୋଷ।

ସାହିତ୍ୟ ସେବାରେ କିଛିଟା ମନ ଦେଇଥାଏ। କନ୍ତୁ ସଙ୍ଗୀତ, ନାଟ୍ୟକଳା, ବକ୍ତୃତା ପ୍ରଦାନ ଇତ୍ୟାଦିରେ ମୋର ପ୍ରବେଶ ବିଷୟରେ କେଉଠୁ କଥଣ ସଂଗ୍ରହ କଲେ, ମତେ ମହତାବ ମନୋନୟନ କଲେ ଓଡ଼ିଶା ସାହିତ୍ୟ ଏକାଡେମୀ ଓ ସଙ୍ଗୀତ ନାଟକ ଏକାଡେମୀର ପ୍ରଥମ ସମ୍ପାଦକ। ପଣ ଘୋର ଶାନ୍ତ, ନିର୍ବାହ ପୁରାଂ ଅଧିବାସରୁ ମୁଁ ବିଚ୍ୟୁତ ହୋଇ ପୁରୁଣା ଭୁବନେଶ୍ୱର ଡାକବଙ୍ଗଳାରେ ପିଲାମାନଙ୍କୁ ଅଣି ନୀଡ଼ ବାନ୍ଧିଲି। ସେହି ସମୟରେ ମାତ୍ର ଦୁଇ ମାସ

ମଧ୍ୟରେ ବାବୁ ରାଜେନ୍ଦ୍ର ପ୍ରସାଦ ଆସିଲେ ଏକାଡେମୀ ଉଦ୍‌ଘାଟନ କରିବାକୁ। ସଭାପତି ଥିଲେ ପଣ୍ଡିତ ନୀଳକଣ୍ଠ ଦାସ।

ଆଜି ଏ ଅନୁଷ୍ଠାନ ମହାଦ୍ରୁମରେ ପରିଣତ। ଗାଡ଼ି, ଆସବାସ, ବଜେଟ ସବୁ ଅପରିମିତ। ଆସ୍ପର୍ଦ୍ଧା ବହୁତ।

ତତ୍‌କାଳୀନ ଶିକ୍ଷାମନ୍ତ୍ରୀଙ୍କ ସହିତ ମୋର ମତଭେଦ ହେଲା। ସେ ଦକ୍ଷିଣାଞ୍ଚଳର ବ୍ୟକ୍ତି ହୋଇଥିବାରୁ ଦକ୍ଷିଣୀ ସମ୍ପାଦକଟିଏ ଆଣିବାକୁ ତାଙ୍କର ମତିଗତି ମୁଁ ବୁଝିପାରି ଇସ୍ତଫା ଦେଲି। ଡକ୍ଟର ମହତାବ ମୋତେ ବୁଝାଇଥିଲେ ଏ ପରିବର୍ତ୍ତନ ସେ ଚାହାନ୍ତି, କାରଣ ଏ ରାଜନୈତିକ ପ୍ରକାଶ ସଂଘର୍ଷ ଭିତରେ ମୁଁ ନିରୀହ ପ୍ରାଣୀଟି ନିଷ୍ପ୍ରାଣ ହୋଇଯିବି। ମତେ ସେ ନେଇଗଲେ ରେଭେନ୍‌ସାକୁ। ମୋ ସ୍ଥାନରେ ଯିଏ ଆସିଲେ ତାଙ୍କ ଉଦ୍ଦେଶ୍ୟରେ ମୁଁ ଗଳ୍ପଟିଏ ଲେଖିଥିଲି। 'ବନ୍ଧୁ' ବୁଝିଶୁଝି ଆସ।'' ସେ ଆସି କିନ୍ତୁ ଯଥେଷ୍ଟ ପାରିବାର ପଣ ଦେଖାଇଲେ, ବୁଝିଶୁଝି ଆସିଥିଲେ।

\+ + + + + +

'ଝଙ୍କାର'ର ଜନ୍ମ ବେଳେ ମୁଁ ଶଙ୍ଖଟିଏ ଫୁଙ୍କିଛି। 'ବିଷୁବମିଳନ'ର ଜନ୍ମତିଥିରେ ମୁଁ ଦୁର୍ବାଟିଏ ଟେକିଛି। 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ଜନ୍ମ ବେଳେ ମୁଁ ପ୍ରଦୀପଟିଏ ଜାଳିଛି। ଶିଳ୍ପୀ ମାନଙ୍କର ପ୍ରଥମ ଅଧିବେଶନରେ ମୁଁ ସେମାନଙ୍କ କପୋଳରେ ଚନ୍ଦନ ଚିତା ରଖିଛି। ବିଷୁବମିଳନ ଉପଲକ୍ଷେ ସ୍ୱତନ୍ତ୍ର ମହିଳା ସମାରୋହରେ ଦୂରସ୍ଥ ରହି ମୁଁ ସେମାନଙ୍କ ଚାହାଣୀ ସହିତ ଚାହାଣୀ ମିଳାଇଛି। ଯାହା ପ୍ରଜାତନ୍ତ୍ର ପରିସରରେ ଘଟିଛି, ଆଦ୍ୟ ଲଗ୍ନରେ ସେଥିରେ ମୋର ସଂଯୁକ୍ତିକୁ ଆଜି ସ୍ମୃତିରେ ସାଇତି ରଖିଛି।

ମହତାବ ନିଜେ ନାଚିଲେ, ମୋତେ ନଚାଇଲେ। ଦେବବାଳା ରାୟଙ୍କୁ ସାଥୀ କଲେ। ବାହାରେ ଶାସକ ସେ, ରଙ୍ଗଭୂମିରେ ବି ମୁହଁ ଉପରେ ରଙ୍ଗ ବୋଲି ଶାସକ ସାଜିଲେ। ସ୍ୱଲିଖିତ ଏକାଙ୍କିକା 'ବାସ୍ତବିକ'। ସ୍ୱର୍ଗତା ନଳିନୀ ଦେବୀ ଦେବବାଳାଙ୍କ ଗଢା ସଜାଉଥିଲେ। ଆଶ୍ଚର୍ଯ୍ୟ ଲାଗେ-ସର୍ବଭାରତୀୟ ସ୍ତରର ନେତା ନିଜ ରାଜ୍ୟରେ କର୍ମ ଜଞ୍ଜାଳ ଭିତରେ ଏ ବ୍ୟକ୍ତିତ୍ୱର ବ୍ୟାପକତା କିପରି ସମ୍ଭବ ହେଉଥିଲା ? ଏ ବିସ୍ମୃତ ଅନ୍ତର୍ଲୀନ ଅବସ୍ଥାରେ।

ଯେଉଁଦିନ ସେ ବମ୍ବେର ଗଭର୍ଣ୍ଣର ହେବାର ଜାଣିଲେ, ମୁଁ ପାଖରେ ଥିଲି। ଯେଉଦିନ ସେ ଆପତକାଳୀନ ଦଣ୍ଡବିଧି ଅନୁସାରେ କାରାରୁଦ୍ଧ ହେବାକୁ

ଗଲେ, ମୁଁ ଥିଲି। ବହୁ ସଭା ସମିତିରେ ତାଙ୍କ ସହିତ ଏକତ୍ର ସମାବେଶ ମତେ ଛୋଟ ପଲ୍ଲକରୁ ବିରାଟ ମହୋଦଧିକୁ ଆକର୍ଷଣ ଦେଇଥିଲା। ବିକ୍ଷୁବ୍ଧ ମିଳନରେ ବକ୍ତାମାନଙ୍କର ଉଷ୍ମାକୁ ପ୍ରଶମିତ କରିବା ପାଇଁ ସେ ମତେ ମଞ୍ଚ ଉପରକୁ ପଠାନ୍ତି। ହସୁଥାନ୍ତି କଣ ଚେୟାରରେ ବସି।

ମାତ୍ର ଗୋଟିଏ ଜଗତକୁ ସେ ମତେ ଜାଣିଶୁଣି ପ୍ରବେଶ ଦେଲେ ନାହିଁ। ସେ ଜାଣିଥିଲେ ମୋର କଳାପ୍ରାଣ, ଧ୍ୟାନସ୍ଥ ଭାବ ସେ ଜଗତରେ ମତେ ଆପଦ୍‌ଗ୍ରସ୍ତ କରିବ। ବିଜୁଙ୍କୁ ନିମନ୍ତ୍ରଣ କଲେ, ମୋଠୁ ସେ ଦୁଇବର୍ଷ ସାନ। ନୀଳମଣି ରାଉତରାୟ, ବୀରେନ୍ଦ୍ର ମିତ୍ର, ଜାନକୀବଲ୍ଲଭ ପଟ୍ଟନାୟକ କେତେ କାହାକୁ ରାଜନୀତିରେ ତାଲିମ ଦେଇ ପ୍ରତିଷ୍ଠା ଦେଲେ। କିନ୍ତୁ ପ୍ରତ୍ୟକ୍ଷ ରାଜନୀତିରୁ ମତେ ଦୂରକୁ ନେଇଯାଇ ଉତ୍ସାହିତ କଲେ ଅଧ୍ୟାପନା, ଗବେଷଣା, ଲେଖା ଓ ସଂସ୍କୃତି ସାହିତ୍ୟ ଉପରେ ମନୋନିବେଶ କରିବାକୁ।

ମୋ ପାଇଁ ପ୍ରଜାତନ୍ତ୍ର ପ୍ରଚାର ସମିତି ଏକ ତୀର୍ଥ କ୍ଷେତ୍ର। ମୋ ପାଇଁ ଆଗରପଡା ଗ୍ରାମ ତୀର୍ଥକ୍ଷେତ୍ର। ମୋ ପାଇଁ ମହତାବ-ମାନସ ପୁଣ୍ୟ ଉଦ୍‌ବେଳନ। ମୋ ପାଇଁ ମହତାବ-ଐତିହ୍ୟ ଏକ ସ୍ମରଣୀୟ ଚିରକାଳର ଅନୁଧ୍ୟେୟ। ମୋ ପାଇଁ ମହତାବ କଳ୍ପନା ସାକାର, ନୂତନ ରାଜଧାନୀ ଏକ ତୀର୍ଥ କ୍ଷେତ୍ର।

ଉତ୍ତର ପୁରୁଷ ସୂତ୍ରରେ ଆଜି ଶ୍ରୀ ଭର୍ତ୍ତୃହରି ମହତାବ ଯଥାର୍ଥ ଅଳଂକରଣ। ତାଙ୍କୁ ଏକଦା ଧୈର୍ଯ୍ୟ ଓ ସହଯୋଗ ଦେବାରେ ସ୍ୱର୍ଗୀୟ ଜଷ୍ଟିସ ହରିହର ମହାପାତ୍ରଙ୍କର ଅବଦାନ ସ୍ମରଣୀୟ।

ଅନେକ ଉଦନ୍ତ ରହିଗଲା। ଯାହା ଅନୁଚ୍ଚାରିତ, ଅବ୍ୟକ୍ତ, ତାହା ବି ସ୍ପଷ୍ଟତର ହୋଇଯାଏ ମନୀଷାର ସ୍ମୃତି ସ୍ପର୍ଶରେ। ମହତାବ କେତେ କାହାକୁ ଧୂଳିକ୍ଲିନ୍ନ ଅବସ୍ଥାରୁ ଉଠେଇଥିବେ, ମାତ୍ର ମୋ ପାଇଁ ତାଙ୍କର ଅଭିବ୍ୟକ୍ତି ଯେତିକି ସେ ଦେଇଯାଇଛନ୍ତି ଅକୁଣ୍ଠ ଦାନରେ ତାହା ମୋର ଶ୍ରେୟଃପ୍ରାପ୍ତି।

ପ୍ରଣାମ ଜଣାଉଛି ସେ ଅମର ଆତ୍ମାଙ୍କୁ ଏହି ପୁଣ୍ୟ ତିଥିରେ......

ବଳଗଣ୍ଡି, ଶ୍ରୀକ୍ଷେତ୍ର



# ଓଡ଼ିଆ ପ୍ରତିଭା

## ଗୋପାଳ ଛୋଟରାୟ

ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନ ପ୍ରସାର ଲାଭ କରୁଥିବାବେଳେ ବାଲେଶ୍ୱର ଅଞ୍ଚଳର ଏକ ସ୍ଲୋଗାନ ଭାସି ଆସିଲା- 'ହରିମହତା, ଆଣିଲେ କଂଗ୍ରେସ ଛତା'। ଏହି ସ୍ଲୋଗାନର ମର୍ମ ହେଲା, ବାଲେଶ୍ୱରର ଶ୍ରୀ ହରେକୃଷ୍ଣ ମହତାବ କଂଗ୍ରେସକୁ ଆଣିଲେ। ମୁଁ ସେତେବେଳେକୁ ଘୋର କିଶୋର ବୟସ ଅତିକ୍ରମ କରିଥାଏ ମାତ୍ର। ତେବେ ଆମ ଘଡ଼ିଶା ଗ୍ରାମ ଜଗତସିଂହପୁର-ଚାଟରାରେ କଂଗ୍ରେସର ଅଳକାଶ୍ରମ ସ୍ଥାପିତ ହୋଇଥିବା ଯୋଗୁଁ ମୁଁ କଂଗ୍ରେସ କ'ଣ ଜାଣିବାକୁ ପାଉଥିଲି, ଜଗତସିଂହପୁରର ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଭାଗୀରଥି ମହାପାତ୍ର, ସରଳାଦେବୀ, ଜାତୀୟ କବି ବୀରକିଶୋର ଦାସ, ନୀଳମଣି ପ୍ରଧାନ ପ୍ରଭୃତି ବହୁ କଂଗ୍ରେସ ନେତାଙ୍କ ପରିଚୟ ଓ ଦର୍ଶନ ସେଇ ଅଳକାଶ୍ରମ ପରିସର ମଧ୍ୟରେ ଲାଭ କରିପାରିଥିଲି। ବାହାରର କିଛି କିଛି କଂଗ୍ରେସ ନେତା ମଧ୍ୟ ଅଳକାଶ୍ରମକୁ ଆସୁଥିଲେ। କିନ୍ତୁ ସେ ପର୍ଯ୍ୟନ୍ତ ମୁଁ ଶ୍ରୀ ହରେକୃଷ୍ଣ ମହତାବଙ୍କ ଦର୍ଶନ ପାଇପାରିନଥିଲି। ମୁଁ ଯେତେବେଳେ ହାଇସ୍କୁଲର ଛାତ୍ର (କିମ୍ବା ହାଇସ୍କୁଲ ଶିକ୍ଷା ସମାପ୍ତ କରିଥାଏ) ସେତିକିବେଳେ ଭାରତୀୟ ଜାତୀୟ କଂଗ୍ରେସର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ (ତୃତୀୟ ଦଶକ) ତାଙ୍କୁ ଦେଖିବାର ସୌଭାଗ୍ୟ ମୋର ହେଲା। ସେ ବର୍ଷ ହରିପୁରା କଂଗ୍ରେସରେ, ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଇଚ୍ଛା ବିରୁଦ୍ଧରେ ସୁଭାଷ ଚନ୍ଦ୍ର ବୋଷ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଆସନ ପାଇଁ ପଟ୍ଟାଭି ସୀତା ରାମାୟାଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ। ସେଇ ଉପଲକ୍ଷେ ଶ୍ରୀଯୁକ୍ତ ବୋଷ ଓଡ଼ିଶା ଭ୍ରମଣରେ ଆସିଲେ। କଟକ ରେଲଷ୍ଟେସନରେ ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନର ଆୟୋଜନ ଚାଲିଥାଏ। ମହତାବ ଉପସ୍ଥିତ ଥା'ନ୍ତି। ସେଇଠି ଶ୍ରୀଯୁକ୍ତ ମହତାବଙ୍କୁ ମୁଁ ଦେଖିଲି। ମୋର ପ୍ରଥମ ଦର୍ଶନ। ସୁଦୀର୍ଘ ସୁଗଠିତ ଦିବ୍ୟକାନ୍ତି ଶରୀର। ଜାଣିଲି ଷ୍ଟେସନରେ ଶ୍ରୀଯୁକ୍ତ ବୋଷଙ୍କୁ ସମ୍ବର୍ଦ୍ଧନା ଓ ଷ୍ଟେସନରୁ ସହର ଭିତରକୁ ଶୋଭାଯାତ୍ରା ଆଦି ସମସ୍ତ କାର୍ଯ୍ୟ ଶ୍ରୀଯୁକ୍ତ ମହତାବଙ୍କ ଉଦ୍ୟମରେ ହିଁ

ହେଉଥାଏ । ମୋର ମନେ ପଡୁଚି, ଗୋଟିଏ ହସ୍ତୀ ଉପରେ ଆସୀନ ହୋଇ ସୁଭାଷବାବୁ ଶୋଭାଯାତ୍ରାରେ ଚାଲିଥା'ନ୍ତି । ପଟ୍ଟାଭିଙ୍କ ସହ ପ୍ରତିଦ୍ୱନ୍ଦିତାରେ ସୁଭାଷବାବୁ ଯେ ଜୟଯୁକ୍ତ ହେଲେ, ତା'ର ସୂତ୍ରପାତ ତାଙ୍କର ଏଇ ଓଡ଼ିଶା ଯାତ୍ରାରୁ ହିଁ ହୋଇଥିଲା ।

ଉଣେଇଶ ଶହ ଛୟାଳିଶ ମସିହା । ସ୍ୱାଧୀନତା ଲାଭର ପ୍ରାକ୍‌କାଳ । ଜଣାଗଲା ଯେ ସ୍ୱାଧୀନତା ପୂର୍ବରୁ ଦେଶରେ ଏକ interim ବା ମଧ୍ୟବର୍ତ୍ତୀକାଳୀନ ସରକାର ଗଠିତ ହେବ । ବିଭିନ୍ନ ରାଜନୈତିକ ଦଳ ଓ ଗୋଷ୍ଠୀ ମାନଙ୍କର ପ୍ରତିନିଧିତ୍ୱରେ ବଡଲାଟ ଏ ସରକାର ଗଠନ କରିବେ । ଆମମାନଙ୍କ ପାଇଁ ଏକ ସୁପ୍ରଭାତରେ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହେଲା ଯେ ସରକାର ଗଠିତ ହେଇଚି ଓ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଏ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଛନ୍ତି । ପ୍ରଦେଶ ସାରା ଆନନ୍ଦ ଉଲ୍ଲାସର ଲହରୀ ଖେଳିଗଲା । ପୁଣି ମନ୍ତ୍ରିମଣ୍ଡଳର ଅନ୍ୟାନ୍ୟ ସଭ୍ୟମାନଙ୍କ ଅପେକ୍ଷା ମହତାବଙ୍କ ବୟସ ଖୁବ୍ କମ । ସର୍ବ କନିଷ୍ଠ । ଅବଶ୍ୟ ମହତାବଜୀ ଏ ସରକାରରେ ଯୋଗ ଦେଲେ ନାହିଁ । କଂଗ୍ରେସର ନିର୍ଦ୍ଦେଶ କ୍ରମେ ମହତାବ ସ୍ୱଇଚ୍ଛାରେ ଏଥିରୁ ଅପସରିଗଲେ ଓ କଂଗ୍ରେସ ପକ୍ଷରୁ ବଙ୍ଗଳାରୁ ଶରତଚନ୍ଦ୍ର ବୋଷ (ସୁଭାଷଚନ୍ଦ୍ରଙ୍କ ଜ୍ୟେଷ୍ଠଭ୍ରାତା) ତାଙ୍କ ସ୍ଥାନରେ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଲେ ।..... ଠିକ୍ ଏଇ ସମୟରେ, ସେଇ ଛୟାଳିଶ ମସିହା ଅଗଷ୍ଟ ଏଗାର ତାରିଖରେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପରେ ମୋର 'ଫେରିଆ' ନାଟକ ମଞ୍ଚସ୍ଥ ହେଲା । ମହତାବ ସେତେବେଳେ ଓଡ଼ିଶାର ପ୍ରିମିୟାର ବା ପ୍ରଧାନମନ୍ତ୍ରୀ । ରେଭେନ୍‌ସା କଲେଜ ହଲରେ ଆସେମ୍ବ୍ଲି ଅନୁଷ୍ଠିତ ହେଉଥାଏ । 'ଫେରିଆ' ନାଟକ କଥାବସ୍ତୁରେ ଓଡ଼ିଶାରେ ତତ୍‌କାଳୀନ ରାଜନୈତିକ ଅବସ୍ଥାର ଚିତ୍ର କିଛି ମାତ୍ରାରେ ସ୍ଥାନ ପାଇଥିଲା । ଏଥିରେ ବିଭିନ୍ନ ରାଜନୀତି ମହଲରେ ବେଶ୍ କିଛି ଚହଳର ସୃଷ୍ଟି ହେଲା । ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଶ୍ରୀ ଯଦୁମଣି ମଙ୍ଗରାଜ, ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଦେବୀ, ବିଭିନ୍ନ ରାଜନୈତିକ ଦଳ ଓ ଆସେମ୍ବ୍ଲି ସଦସ୍ୟ, ଯେଉଁମାନେ ପ୍ରାୟ ନାଟକ ଦେଖନ୍ତି ନାହିଁ, ସେମାନେ ଏ ନାଟକ ଦେଖିବାକୁ ଆସିଲେ । ଶେଷକୁ ଆସିଲେ ସ୍ୱୟଂ ଓଡ଼ିଶାର ପ୍ରିମିୟର ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ । ଦୀର୍ଘ ସାଢ଼େ ତିନି ଘଣ୍ଟାର ନାଟକଟିକୁ ଆମୂଳଚୂଳ ବସି ଦେଖିଲେ । କେବଳ ଦେଖିଲେ ତ ନାହିଁ, ତା' ପରଦିନ କଟକ ସ୍ୱରାଜ ଆଶ୍ରମସ୍ଥିତ ତାଙ୍କ

କଟେଜକୁ ମତେ ଡକେଇ ନେଇ ନାଟକ ଉପରେ ଆଲୋଚନା କଲେ। ମୋର ଆଶଙ୍କା ହେଉଥିଲା, ସେ ହୁଏତ ନାଟକରେ ଯେଉଁ ରାଜନୈତିକ ଚିତ୍ରଣ ରହିଚି, ସେ ପ୍ରସଙ୍ଗ ସେ ଉତ୍ଥାପନ କରିବେ। କିନ୍ତୁ ନା, ଆରମ୍ଭରୁ ହିଁ ସେ ନାଟକର କଳାତ୍ମକ ଦିଗ ପ୍ରତି ଦୃଷ୍ଟି ଦେଲେ। ନାଟକର ଆଙ୍ଗିକ ଓ ତାତ୍ତ୍ୱିକ ବିଚାରରେ ବିଭିନ୍ନ ପ୍ରସଙ୍ଗ ଆଲୋଚନା ଭିତରକୁ ଆସୁଥାଏ। ଆଲୋଚନା ଚାଲିଚି। ମୁଁ ଅସୁବିଧାରେ ପଡ଼ିଗଲା ପରି ମତେ ବୋଧ ହେଉଥାଏ।.... ପ୍ରଦେଶର ପ୍ରିମିୟର। ମୁଁ ଆସିଲା ବେଳେ ଗେଟ ପାଖରେ ଦେଖି ଆସିଚି ଗାଡି ଓ ପାଇଲଟ ପ୍ରସ୍ତୁତ। ପୁଣି ମୁଁ ଏଠି ଥିବା ପର୍ଯ୍ୟନ୍ତ ଅନ୍ୟ କେହି ଲୋକ ଭିତରକୁ ଆସିପାରିବେ ନାହିଁ। ମୋ ସହିତ ଆଲୋଚନା ଚାଲିଚି ବୋଲି ମୁଁ ନିଜକୁ ଦୋଷୀ ମନେ କରୁଥାଏ। ପ୍ରାୟ ପନ୍ଦର ମିନିଟ ପରେ ହଠାତ୍ ମତେ କହିଲେ—ମୀରାର ମା'କୁ ନାଟକର ଗଣ୍ଡି ଭିତରେ ସ୍ଥାନ ଦେଲନାହିଁ କାହିଁକି?..... ଏ ପ୍ରଶ୍ନରେ ମୁଁ ଏକାବେଳକେ ବିସ୍ମୟାଭିଭୂତ ହୋଇପଡ଼ିଲି। ନାଟକରେ 'ମୀରା' ଚରିତ୍ର ରହିଚି। ବାସ୍ତବରେ ମୀରାର ମା' ମଧ୍ୟ ନାଟକରେ ଥିଲେ। କିନ୍ତୁ ଏଇ ଚରିତ୍ରଟିରେ ଅଭିନୟ କରିବା ପାଇଁ ଅନ୍ନପୂର୍ଣ୍ଣାରେ ନାରୀ ଅଭିନେତ୍ରୀ ଅଭାବ ପଡିବାରୁ 'ମା' ଚରିତ୍ରଟିକୁ ବାଦ୍ ଦେବାକୁ ପଡ଼ିଲା। ଏକାନ୍ତ ପର୍ଯ୍ୟବେକ୍ଷଣ ଦୃଷ୍ଟିରେ 'ଫେରିଆ' ନାଟକ ନ ଦେଖିଲେ 'ମୀରା'ର ମା ଚରିତ୍ରର ଅନୁପସ୍ଥିତି କେହି ଅନୁଭବ କରିପାରିବ ନାହିଁ। ଅଥଚ ଶ୍ରୀଯୁକ୍ତ ମହତାବ ନାଟକ ଦେଖି ଠିକ୍ ଏଇ କଥାଟି ମୋ ପାଖରୁ ଜାଣିବାକୁ ଚାହିଁଛନ୍ତି। ତାଙ୍କର ଏଇ ପ୍ରତ୍ୟକ୍ଷ ଦର୍ଶନ ପାଇଁ ତାଙ୍କ ପାଖରେ ମୋ ମଥା ଆପେ ଆପେ ନତ ହେଲା ଆସିଲା। 'ମୀରା' ମା'କୁ ନାଟକରେ ସ୍ଥାନ ଦେଇ ନ ପାରିବାର କାରଣଟି ଜଣାଇ ତାଙ୍କ ଠାରୁ ବିଦାୟ ନେଲି।

ଉଣେଇଶ'ଶ ଚଉବନ ମସିହା ଅଗଷ୍ଟ ମାସ ପାଞ୍ଚ ତାରିଖରେ ମୋର ସଂପୂର୍ଣ୍ଣ ରାଜନୈତିକ ନାଟକ 'ପରକଲମ' ଜନତା ରଙ୍ଗମଞ୍ଚରେ ମୁକ୍ତି ଲାଭ କଲା। ଉଦ୍ଘାଟକ ଡକ୍ଟର ହରେକୃଷ୍ଣ ମହତାବ। ପ୍ରେକ୍ଷାଳୟରେ ମୁଁ ଡକ୍ଟର ମହତାବଙ୍କ ପଛପଟ ଚୌକିରେ ବସିଥାଏ। ଲକ୍ଷ୍ୟ କଲି, ସେ ଯେମିତି ଚୌକି ଉପରେ ଠିକ୍ ସ୍ଥିର ହୋଇ ବସି ପାରୁନାହାନ୍ତି। ଭାବିଲି, ଯେହେତୁ ସେ ନିଜେ ଜଣେ ରାଜନୀତିଜ୍ଞ ଓ ପରକଲମ ନାଟକର ସମସ୍ତ ପୃଷ୍ଠଭୂମି

ବେଳେ ରାଜନୀତି ସହିତ ସଂଯୁକ୍ତ, ସେଥିପାଇଁ ତାଙ୍କଠାରେ ଏମିତି ଉଦ୍‌ବେଗ ପ୍ରକାଶ ପାଇବା ସ୍ୱାଭାବିକ। ନାଟକ ଶେଷ ହେଲା। ଦେଖିଲି, ପୂର୍ବର ସେ ଅସ୍ଥିରତା କି ଉଦ୍‌ବେଗ ଆଉ ନାହିଁ। ସଂପୂର୍ଣ୍ଣ ସ୍ୱାଭାବିକ ଅବସ୍ଥା। ମତେ କହିଲେ—କାଲି ସକାଳେ ତୁମେ ମୋ ଘରକୁ ଆସ। ସେ ସେତେବେଳେ ବିହାରିବାଗରେ ରହୁଥା'ନ୍ତି। ମୁଁ ଯଥା ସମୟରେ ଯାଇ ପହଞ୍ଚିଲି। ସେଦିନ ତାଙ୍କ ନିକଟରେ ମୋର ପ୍ରାୟ ଦେଢ ଘଣ୍ଟାରୁ ଉପର ସମୟ କଟିଚି। ପରକଲମ ନାଟକ ସମ୍ପର୍କରେ ଆଲୋଚନା ହେଉଥାଏ— ମଝିରେ ମଝିରେ ଅନ୍ୟ ପ୍ରସଙ୍ଗ ବି। ଲକ୍ଷ୍ୟ କଲି କିଛିକ୍ଷଣ ନୀରବ ରହିବା ପରେ ସେ ବେଶ୍ ସ୍ଥିର ଗଳାରେ କହିଲେ—ଦେଖ, ପରକଲମ ନାଟକ ସମ୍ପର୍କରେ ମୁଁ ତୁମକୁ କିଛି କହିବି। ଏବେ କଥାରେ ଯଦି କିଛି ଭୁଲ କି ବିଭ୍ରାନ୍ତିକର ପ୍ରସଙ୍ଗ ଥିବ, ତେବେ ତୁମେ ତା'ର ସଂଶୋଧନ କରିବ। ଶୁଣ।.... ଟିକିଏ ରହି ସେ ତାଙ୍କର କଥା ଆରମ୍ଭ କଲେ—ତମ ନାଟକରେ ତମେ ଲେଖିଛ ଯେ ଉତ୍ତର ବାଲେଶ୍ୱରରେ ଦୁର୍ଭିକ୍ଷ ହେବା ଫଳରେ ହଜାର ହଜାର ଲୋକ ମୃତ୍ୟୁବରଣ କରିଚନ୍ତି, ଏକଥା ଠିକ୍। ତମେ ପୁଣି ଲେଖିଚ ଯେ ଏ ଦୁର୍ଭିକ୍ଷ କୌଣସି ଦୈବୀଦୁର୍ବିପାକ ଯୋଗୁ ନୁହେଁ— ଏହା ମନୁଷ୍ୟକୃତ; ଏକଥା ମଧ୍ୟ ଠିକ୍। କିନ୍ତୁ ଏ ଦୁର୍ଭିକ୍ଷ କେବେ କେଉଁ ମସିହାରେ ପଡିଥିଲା, ତା'ର କୌଣସି ସୂଚନା ତମେ ଜାଣିଶୁଣି ତମ ବହିରେ ଦେଇନ। ଏ ଦୁର୍ଭିକ୍ଷର ସମୟ ହେଲା ଏକ ଚାଳିଶ / ବୟାଳିଶ ମସିହା। ଦ୍ୱିତୀୟ ମହାଯୁଦ୍ଧ ସମୟ। ସବୁଠୁ ବଡ କଥା ହେଲା, ମନୁଷ୍ୟକୃତ ଏ ଦୁର୍ଭିକ୍ଷ ପାଇଁ ଦାୟୀ ମାତ୍ର ଗୋଟିଏ ଲୋକ। ସେ ଲୋକଟି କିଏ, ତା'ର ପ୍ରକୃତ ପରିଚୟ ତମେ ଘୋଡାଇ ରଖି ତା'ର ପ୍ରତିରୂପ ଆଉ ଏକ ଲୋକକୁ ତୁମେ ତମ ନାଟକରେ ସ୍ଥାନ ଦେଇଛ। ଏହାଦ୍ୱାରା ତୁମେ ଅବଶ୍ୟ ଖୁବ ବୁଦ୍ଧିମାନର କାମ କରିଚ। ଯଦି ପ୍ରକୃତ ଦୋଷୀ ଲୋକଟିକୁ ତୁମେ ତମ ନାଟକକୁ ଆଣିଥା'ନ୍ତ ଓ ଦୁର୍ଭିକ୍ଷ ପଡ଼ିବାର ପ୍ରକୃତ ସମୟକୁ ତମେ ନାଟକରେ ଉଲ୍ଲେଖ କରିଥା'ନ୍ତ, ତେବେ ପରକଲମ ନାଟକ କେବେ ମଞ୍ଚସ୍ଥ ହୋଇ ପାରି ନଥା'ନ୍ତା—ହୁଏତ ବ୍ୟାଜ୍ୟାପ୍ତ ହୋଇଯାଇଥା'ନ୍ତା। ତମେ ନିଜେ ମଧ୍ୟ ବିପଦର ସମ୍ମୁଖୀନ ହୋଇଥା'ନ୍ତ। କୁହ, ମୁଁ ଯାହା କହିଲି, ଠିକ୍ ତ। ଭୁଲ ଥିଲେ ସଂଶୋଧନ କର।... ସଂଶୋଧନ କରିବାର ମୋର କିଛି ନ ଥିଲା। ଡକ୍ଟର ମହତାବ ଠିକ୍

କଥା କହିଛନ୍ତି। ଯେଉଁ କଳଙ୍କିତ ବ୍ୟକ୍ତିଟି ଏ ଦୁର୍ଭିକ୍ଷ ଓ ହଜାର ହଜାର ବ୍ୟକ୍ତିଙ୍କ ମୃତ୍ୟୁ ପାଇଁ ଦାୟୀ, ତା'ର ରହସ୍ୟ ମୋ ପକ୍ଷରୁ ମୁଁ ଏ ପର୍ଯ୍ୟନ୍ତ ଉଦ୍‌ଘାଟନ କରି ନାହିଁ; ସେଥିପାଇଁ ସମୟ ଓ ସୁଯୋଗର ଅପେକ୍ଷାରେ ରହିଚି। ଓଡ଼ିଶାର ଚତୁର୍ଥ ଦଶକର ସେନ୍‌ସର ରିପୋର୍ଟର ସଂକଳନକର୍ତ୍ତା ଶ୍ରୀଯୁକ୍ତ ଅହମେଦ ଆଇ.ସି.ଏସ୍ ତାଙ୍କ ରିପୋର୍ଟରେ ମଧ କହିଛନ୍ତି ଯେ ଚତୁର୍ଥ ଦଶକର ଏ ଦୁର୍ଭିକ୍ଷ କୌଣସି ପ୍ରାକୃତିକ ଦୁର୍ବିପାକ ଜନିତ ନୁହେଁ, ଏହା ମନୁଷ୍ୟକୃତ ଦୁର୍ଭିକ୍ଷ। ସେ ମନୁଷ୍ୟଟି କିଏ, ସେ କଥା ଅହମେଦ ସାହେବ ମଧ ଉଲ୍ଲେଖ କରିନାହାନ୍ତି।

ସେଦିନ ତୃପ୍ତ ମନ, ଓ ହୃଷ୍ଟ ଚିତ୍ତରେ ଡକ୍ଟର ମହତାବଙ୍କୁ ବିନମ୍ର ପ୍ରଣାମ ଜଣାଇ ତାଙ୍କଠୁ ବିଦାୟ ନେଇ ଆସିଲି।

ଉଣେଇଶ ଶହ ବାଷଠି ମସିହା। କଟକ 'ଜନତା' ରଙ୍ଗମଞ୍ଚ ସ୍ଥିର କଲା ସେମାନେ 'ପ୍ରତିଭା' ଉପନ୍ୟାସର ନାଟ୍ୟରୂପ ମଞ୍ଚସ୍ଥ କରିବେ। ନାଟ୍ୟରୂପ ଦେବାର ଦାୟିତ୍ୱ ମୋ ପରେ ନ୍ୟସ୍ତ ରହିଲା। ଡକ୍ଟର ମହତାବଙ୍କ ସମ୍ମତି ଲୋଡ଼ା। ନିର୍ଦ୍ଦେଶକ ଶ୍ରୀ ନିରଞ୍ଜନ ଶତପଥୀ ଓ ମୁଁ ଭୁବନେଶ୍ୱର ଏକାମ୍ର ନିବାସରେ ତାଙ୍କୁ ସାକ୍ଷାତ କଲୁ, ସବୁ କଥା କହିଲୁ। ଆଉ ବିଶେଷ କିଛି ଉପକ୍ରମଣିକାର ପ୍ରୟୋଜନ ରହିଲା ନାହିଁ—ତାଙ୍କର ସଦୟ ସମ୍ମତି ମିଳିଲା। ଏଇଠି ମୁଁ ନିବେଦନ କଲି—ଲେଖା ଆରମ୍ଭ ପୂର୍ବରୁ ସେ ବିଷୟରେ ଆପଣଙ୍କ ସହିତ କିଛି ପ୍ରାଥମିକ ଆଲୋଚନା...। କଥାରେ ବାଧା ଦେଇ କହିଲେ—କି ଆଲୋଚନା? ତମ ହାତରେ ତ ବହି। ତମେ ବହି ପଢ଼ିବ, ନାଟକ ଲେଖିବ। ଏ କ୍ଷେତ୍ରରେ ବହିର ଲେଖକ ସହିତ ଏଭଳି ଆଲୋଚନା କଲେ ଅଯଥା କନଫ୍ୟୁଜନ ବଢ଼ିବ। ଏ ପ୍ରସଙ୍ଗ ଏତିକିରେ ବନ୍ଦ ହେଲା। କହିଲି— ତେବେ ମୁଁ ନାଟକ ଲେଖା ଶେଷ କରି ପାଣ୍ଡୁଲିପି ନେଇ ଆସିବି। ସଙ୍ଗେ ସଙ୍ଗେ ଏ ପ୍ରଶ୍ନର ନିଷ୍ପତ୍ତି ସେ ଜଣାଇଦେଲେ ଯେ ସେ ପାଣ୍ଡୁଲିପି ପଢିବେ ନାହିଁ। ନାଟ୍ୟ ରଚନାରେ ମୋର ପୂର୍ଣ୍ଣ ସ୍ୱାଧୀନତା ରହିବ। ସେଥିରେ ମୁଁ ହସ୍ତକ୍ଷେପ କରିବି ନାହିଁ। ଯେଉଁଦିନ ପ୍ରତିଭା ନାଟକ ମୁକ୍ତିଲାଭ କରିବ, ସେଦିନ ମୁଁ ଜଣେ 'ଦର୍ଶକ' ଭାବରେ ହିଁ ନାଟକ ଦେଖିବି।

ତାଙ୍କଠୁଁ ବିଦାୟ ନେଇ ଫେରିଲୁ। ବନ୍ଧୁ ନିରଞ୍ଜନଙ୍କ ଆନନ୍ଦରେ ସୀମା ନାହିଁ। କିନ୍ତୁ ମୁଁ? ନାଟ୍ୟରୂପ ଦେବାର ସମସ୍ତ ସ୍ୱାଧୀନତା ମତେ ଦେଇ

ତାଙ୍କର ଗୋଟିଏ ଅବ୍ୟକ୍ତ କଥା ଡକ୍ଟର ମହତାବ ମତେ ଜଣାଇ ଦେଲେ ଯେ, ଏ ସ୍ୱାଧୀନତା ସେ ମତେ ଦେଇଛନ୍ତି ଏଇ ଦୃଷ୍ଟିରୁ ଯେ ଏଥିପାଇଁ ମୋ ଉପରେ ତାଙ୍କର ପୂର୍ଣ୍ଣ ଆସ୍ଥା ଓ ଭରସା ରହିଚି। ମୁଣ୍ଡ ଉପରେ ଏଇ ପଥର ବୋଝ ନେଇ ମୁଁ କଟକ ଫେରିଲି।

ନାଟ୍ୟରୂପ ଆରମ୍ଭର ଉପକ୍ରମ ଚାଲିଥାଏ, କିନ୍ତୁ କିଛି କରିପାରୁ ନଥାଏ। ଏହା ପୂର୍ବରୁ ମୁଁ ଯେଉଁ ତିନିଗୋଟି ଉପନ୍ୟାସ—ଝନ୍‌ଜା, ମଲାଜହ୍ନ ଓ ଅମଡ଼ାବାଟରେ ମଞ୍ଚ ନାଟ୍ୟରୂପ ମୁଁ ଦେଇଚି, ସେସବୁ ଯେ ଆଶାତୀତ ସାଫଲ୍ୟ ଲାଭ କରିଚି, ସେ ସେ କଥା ଅତି ବିନୟ ଅଥଚ ଅତି ଦୃଢ଼ ଭାବରେ ମୁଁ ଏଠି ଉଲ୍ଲେଖ କରୁଚି। କିନ୍ତୁ ପ୍ରତିଭା ଉପନ୍ୟାସକୁ ଯେ ମୁଁ ସେଇ ମର୍ଯ୍ୟାଦା ଦେଇ ପାରିବି, ଏକଥା କହିବାର ଦୃଢ଼ତା ତ ମୁଁ ମୋ' ଭିତରେ ଖୋଜି ପାଉନି। ଯଦି ଡକ୍ଟର ମହତାବ ନାଟକ ମଞ୍ଚସ୍ଥ ହେବା ପୂର୍ବରୁ ପାଣ୍ଡୁଲିପି ପଢ଼ିବାର ସମ୍ମତି ଦେଇଥା'ନ୍ତେ ତେବେ ମୋର କିଛି ଚିନ୍ତା ନ ଥିଲା। ଭଗବାନ କାହିଁକି ଯେ ମତେ ଏ ଅଗ୍ନିପରୀକ୍ଷାରେ ପକାଇଲେ !! ଅଭିନୟ ଦେଖିସାରି ଡକ୍ଟର ମହତାବ ଯଦି ନୀରବରେ ପ୍ରେକ୍ଷାଳୟ ଛାଡ଼ି ଚାଲିଯାନ୍ତି !! ନା.... ନା, ଏ କଳ୍ପନା ମୁଁ କରିପାରୁନାହିଁ।.... ଭାବିଲି ନା, ମୁଁ ଦୂରେଇଯିବି। 'ପ୍ରତିଭା'ର ନାଟ୍ୟରୂପ ଦେବାର ଦାୟିତ୍ୱ ମୁଁ ନେବି ନାହିଁ। କିନ୍ତୁ ପର ମୁହୂର୍ତ୍ତରେ ମୋ ନିଜକୁ ମୁଁ ସତର୍କ କରାଇଦେଲି—ଏ କି ପାଗଳାମୀ ମୁଁ କରୁଚି। ଦୁଇ ଦୁଇ ଥର ମୋ ନାଟକ ଦେଖିସାରି ମତେ ତାଙ୍କ ଘରକୁ ସ୍ୱତଃପ୍ରବୃତ୍ତ ଭାବେ ଡକାଇ ନେଇ ମୋ ସହିତ ନିଷ୍କପଟ ଆଲୋଚନା କରିଛନ୍ତି। ପୁଣି ଆଉ ଏକ ଦିନର କଥା ମୋର ମନେ ପଡ଼ିଗଲା। ସେ ବର୍ଷ ଡିସେମ୍ବର ମାସ ଏକୋଇଶି ତାରିଖରେ ମୁଁ କଟକ ଆକାଶବାଣୀରେ ଯୋଗ ଦେଇଥାଏ। ସେତେବେଳେ ଶ୍ରୀଯୁକ୍ତ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାନ୍ତି। ସେଇ ଡିସେମ୍ବର ମାସ ଏକତିରିଶ ତାରିଖରେ କଟକ ଆକାଶବାଣୀରେ ଏକ କବି ସମ୍ମିଳନୀ ଅନୁଷ୍ଠିତ ହେଲା। ଉଦ୍‌ଘାଟକ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ। ସନ୍ଧ୍ୟା ଛ'ଘଣ୍ଟାରେ ଉତ୍ସବ ପ୍ରାଙ୍ଗଣରୁ କାର୍ଯ୍ୟକ୍ରମର ସିଧାସଳଖ ପ୍ରସାରଣ ହେବ। ସେତେବେଳେ କଟକ ବେତାର କେନ୍ଦ୍ର ମଧୁପୁର ହାଉସରେ ଥିଲା। ମୁଁ ପୋର୍ଟିକୋ ତଳେ ଠିଆ ହୋଇଛି। ଛ' ଟା ବାଜିବାକୁ ମାତ୍ର ଦୁଇ ମିନିଟ ଅଛି। ମୁଖ୍ୟମନ୍ତ୍ରୀ ଆସି ନାହାନ୍ତି। କେନ୍ଦ୍ର ପରିଚାଳକ ଶ୍ରୀଯୁକ୍ତ ବସୁ

ଟିକିଏ ଅସ୍ଥିର ଭାବେ ବୁଲାଚଲା କରୁଥା'ନ୍ତି। ଏତିକିବେଳେ ଗାଡ଼ି ଆସି ରିସେପ୍‌ସନ କାଉଣ୍ଟାର ପାଖେ ଅଟକିଲା। ମୁଖ୍ୟମନ୍ତ୍ରୀ ଗାଡ଼ିରୁ ଓହ୍ଲାଇଲେ। ଶ୍ରୀଯୁକ୍ତ ବସୁ ତାଙ୍କୁ ଯଥାରୀତି ସମ୍ମାନ ଓ ସମ୍ବର୍ଦ୍ଧନା ଜ୍ଞାପନ କଲେ। ଏତିକିବେଳେ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ମୋ ଉପରେ ପଡ଼ିଲା। ମୁଁ ପ୍ରଣାମ ଜଣାଇଲି। ସେ ତରବରରେ ଉତ୍ସବ ପ୍ରାଙ୍ଗଣ ଆଡ଼କୁ ଆଗେଇ ଯାଉ ଯାଉ ଓଏଭ କରିବା ଢଙ୍ଗରେ ହାତ ଟେକି କହିଲେ — କ'ଣ ଗୋପାଳବାବୁ! .... ଶ୍ରୀଯୁକ୍ତ ବସୁ ତଡ଼ିତ୍ ବେଗରେ ପଛକୁ ଫେରି ଚାହିଁ ମତେ ଦେଖି କହି ଉଠିଲେ – Sir, Mr. Chhota Roy is now in our staff..... ଏ କଥାର ଉତ୍ତରରେ ମୁଖ୍ୟମନ୍ତ୍ରୀ କହିଲେ — I know, I know, Mr. Basu, he is a very powerful dramatist.... ସେ ଦୁହେଁ ଚାଲିଥା'ନ୍ତି, ମୁଁ ତାଙ୍କ ପଛେ ପଛେ ଚାଲିଚି। ମୁଖ୍ୟମନ୍ତ୍ରୀଙ୍କ ମୁଖରୁ ଏକଥା ଶୁଣି ମୁଁ ସ୍ତବ୍ଧ ହେଇଗଲି। ଆଉ ଆଗକୁ ଯାଇପାରିଲି ନାହିଁ। ଏ ରାଜ୍ୟର ମୁଖ୍ୟମନ୍ତ୍ରୀ ସେ — ଏଇ ରାଜ୍ୟରେ ପ୍ରତିଷ୍ଠିତ ବେତାର କେନ୍ଦ୍ରର ଜଣେ କର୍ମଚାରୀ ମୁଁ। ଆଉ ସେଇ ବେତାର କେନ୍ଦ୍ରର ସର୍ବୋଚ୍ଚ କର୍ତ୍ତାଙ୍କୁ ମୋ ସମ୍ପର୍କରେ ତାଙ୍କ ମୁଖରୁ ଏଭଳି ଉଦାର ମନ୍ତବ୍ୟ। କୃତଜ୍ଞତାରେ ମୋ ମନପ୍ରାଣ ଭରିଉଠିଲା।... ଏଇସବୁ ଘଟଣାର ସ୍ମରଣରେ ମୁଁ ଠିକ୍ କଲି — ନା, ମୁଁ ଏପରି ଅକୃତଜ୍ଞ ହୋଇପାରିବି ନାହିଁ। ଯେଉଁ ଭରସାରେ ସେ ମୋ ହାତକୁ 'ପ୍ରତିଭା' ଉପନ୍ୟାସଟି ଟେକି ଦେଇଚନ୍ତି, ମୁଁ ତା'ର ମର୍ଯ୍ୟାଦା ରକ୍ଷା କରିବି।

ଯଥା ସମୟରେ (୨୬/୩/୧୯୬୨) ପ୍ରତିଭା ନାଟକ 'ଜନତା ରଙ୍ଗମଞ୍ଚରେ ମଞ୍ଚସ୍ଥ ହେଲା। ଉଦ୍‌ଘାଟକ ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ଦାଶ। ବହୁ ବିଶିଷ୍ଟ ଅତିଥି ଓ ଦର୍ଶକଙ୍କ ସମାବେଶରେ ଡକ୍ଟର ମହତାବ ଉପସ୍ଥିତ ଥା'ନ୍ତି। ସେଦିନ ମୁଁ ପ୍ରେକ୍ଷାଳୟ ଭିତରେ ରହିଲି ନାହିଁ — ସମସ୍ତ ସମୟ ଷ୍ଟେଜ୍ ଭିତରେ ହିଁ ରହିଲି। ସେଇଠି ଥାଇ କିଛି ଶୁଭ ସୂଚନା ପାଇଥାଏ।.... ନାଟକର ଯବନିକା ପତନ ହେଲା। ମୁଁ ସଙ୍ଗେ ସଙ୍ଗେ ବାହାରକୁ ନ ଆସି ଆଉ କିଛି ସମୟ ଷ୍ଟେଜ୍ ଭିତରେ ରହିଲି। ଶୁଭସୂଚନା ପାଇଚି ସତ, କିନ୍ତୁ ଭିତରକୁ ଆଶଙ୍କା ଓ ଉଦ୍‌ବେଗ ସମ୍ପୂର୍ଣ୍ଣ ଦୂର ହୋଇନାହିଁ।... ବାହାରକୁ ଆସିଲି। ବହୁ ବିଶିଷ୍ଟ ବ୍ୟକ୍ତି ଓ ସାମ୍ବାଦିକଙ୍କ ଗହଣରେ ଡକ୍ଟର ମହତାବ ପ୍ରେକ୍ଷାଳୟ ବାହାରେ ଉପସ୍ଥିତ ଅଛନ୍ତି। ଆଶ୍ୱସ୍ତ ହେଲି। ଦେଖିଲି, ମହତାବଙ୍କ

ସହର୍ଷ ବଦନ। ଲକ୍ଷ୍ୟ କଲି, ନାଟକ ଦେଖିସାରି ଯେଉଁମାନେ ସେଠି ସମବେତ ହୋଇଛନ୍ତି, ସେମାନଙ୍କ ଆଲୋଚନାରେ ହର୍ଷ ଆନନ୍ଦ ଅପେକ୍ଷା ଏକ ''ସନ୍ତୋଷ'' ଭାବ ବେଶି ମାତ୍ରାରେ ପ୍ରକାଶ ପାଇଚି। ମୋ ମନରେ ବି ସନ୍ତୋଷ ଆସିଲା। ପ୍ରତିଭା ଉପନ୍ୟାସର ଲେଖକଙ୍କ ଆସ୍ଥା ମୁଁ ହରାଇନାହିଁ।

ଡକ୍ଟର ମହତାବ ମତେ କହିଥିଲେ, ଜଣେ ଦର୍ଶକ ଭାବରେ ସେ ପ୍ରତିଭା ନାଟକ ଦେଖିବେ। ସେଦିନ ସେ ଦର୍ଶକ ଭାବରେ ନାଟକ ଦେଖି ଜଣେ ନିରୀକ୍ଷକ ଭାବେ ତାଙ୍କର ଯାହା ମତାମତ, ନିଜ ହସ୍ତରେ ଲିପିବଦ୍ଧ କରିଛନ୍ତି, ସେତକ ଏଠି ଉଦ୍ଧାର କରି ମୋର୍ ଏ କ୍ଷୁଦ୍ର ନିବନ୍ଧଟିର ଉପସଂହାର କରୁଚି।

''ପ୍ରତିଭା ଉପନ୍ୟାସଟି ବାସ୍ତବରେ ଲେଖିଥିଲି ଖ୍ରୀ: ୧୯୨୩ରେ, ଭାଗଲପୁର ସେଣ୍ଟ୍ରାଲ ଜେଲ୍‌ରେ ବନ୍ଦୀ ଥିବା ଅବସ୍ଥାରେ। ସେ ଉପନ୍ୟାସଟି ପ୍ରକାଶ ପାଇଲା ପ୍ରାୟ ପଚିଶ ବର୍ଷ ପରେ। ଏଇ ଉପନ୍ୟାସଟିକୁ ନାଟ୍ୟରୂପ ଦେବା ପାଇଁ ଅନେକ ଉଦ୍ୟମ କରିଛନ୍ତି। କିନ୍ତୁ ଶ୍ରୀ ଗୋପାଳ ଛୋଟରାୟଙ୍କ ଦ୍ୱାରା ଏହି କାର୍ଯ୍ୟଟି ଯେପରି ସମ୍ପନ୍ନ ହେଇଚି, ସେପରି ଅନ୍ୟ କେହି କରିପାରି ନାହାନ୍ତି। ଶ୍ରୀ ଛୋଟରାୟଙ୍କୁ ମୁଁ ଧନ୍ୟବାଦ ଦେଉଚି ଯେ ସେ ଏକ ଯୁଗର ଅବସ୍ଥାକୁ ରଙ୍ଗମଞ୍ଚରେ ବହୁ ଦର୍ଶକଙ୍କ ଚିତ୍ତ ବିନୋଦନ ପାଇଁ ସୁଚାରୁରୂପେ ଚିତ୍ରଣ କରପାରିଛନ୍ତି।

ଶ୍ରୀ ହରେକୃଷ୍ଣ ମହତାବ''

ଆଲାମଚାନ୍ଦ ବଜାର
କଟକ-୨



# ଜାତୀୟ ସାହିତ୍ୟ ଯୁଗରେ ଡକ୍ଟର ମହତାବ

**ନିତ୍ୟାନନ୍ଦ ମହାପାତ୍ର**

ଭାରତରେ ଦିନେ ସ୍ୱାଧୀନତା ସଂଗ୍ରାମ ହୋଇଥିଲା। ସତୁରି ବର୍ଷରୁ ଊର୍ଦ୍ଧ୍ୱ କାଳ ହେଲାଣି। ଏକଥା ଲୋକେ ଭୁଲିଯିବାକୁ ବସିଲେଣି ବା ଭୁଲିଗଲେଣି ବୋଲି କହିଲେ ଚଳିବ। ଲୋକ ସ୍ମୃତି ତ କ୍ଷଣସ୍ଥାୟୀ, କିନ୍ତୁ ସାହିତ୍ୟ କାଳକୁ ଜୟ କରିଥାଏ। ଏବେ ଦୁଇ-ତିନି ବର୍ଷ ହେବ ଓଡ଼ିଆ ସାହିତ୍ୟରେ କେତେକ ଲେଖକ ଭାରତର ସ୍ୱାଧୀନତା ସଂଗ୍ରାମ ସମ୍ବନ୍ଧରେ ଉଲ୍ଲେଖ କରିବାର ଦେଖାଯାଉଛି। କିନ୍ତୁ ସ୍ୱାଧୀନତା ଉତ୍ତର ପ୍ରାୟ ଚାଳିଶି ବର୍ଷ କାଳରେ ଓଡିଆ ସାହିତ୍ୟର କଳେବରରେ ପୂର୍ବତନ ସଂଗ୍ରାମର କୌଣସି ନାମ ମଧ୍ୟ ଦେଖାଯାଉନାହିଁ କହିଲେ ଚଳେ।

ଓଡ଼ିଶା ସାହିତ୍ୟର ଗୋଟାଏ କ୍ଷଣସ୍ଥାୟୀ ବିଭାଗକୁ ଆମ ଦେଶର ସାହିତ୍ୟ ସମାଲୋଚକମାନେ ଗୋଟିଏ ସ୍ୱତନ୍ତ୍ର ସାହିତ୍ୟ ଯୁଗ ବୋଲି ଆଖ୍ୟା ଦେଇ ଚାଲିଛନ୍ତି। ସେ ଯୁଗରେ ଯେଉଁ ସାହିତ୍ୟ ସୃଷ୍ଟି ହୋଇଥିଲା। ତାହା ଯେ ଏକାନ୍ତ ଅନୁକୃତ ସାହିତ୍ୟ, ଏକଥା ଯେ କୌଣସି ସାହିତ୍ୟ ପାଠକ ନିର୍ଭୀକ ଭାବେ କହିପାରିବ। ଅବଶ୍ୟ ଏ ଅନୁକୃତିଟା ସାହିତ୍ୟରେ ଶ୍ରେୟ କି ନୁହେଁ ତାହା କହିବା କଷ୍ଟକର। ତଥାପି ଏହା ସାହିତ୍ୟ ଜୀବନରେ ଏକ ସ୍ୱାଭାବିକ ଧାରା କହିଲେ ଚଳେ।

ବଙ୍ଗ ସାହିତ୍ୟରେ ରବୀନ୍ଦ୍ର ନାଥଙ୍କ ଆବିର୍ଭାବ ସମଗ୍ର ଭାରତକୁ ଅଭିଭୂତ କରିଥିଲା। ତେଣୁ ଓଡ଼ିଆ ସାହିତ୍ୟ ଯେ ସେ ପ୍ରଭାବରୁ ମୁକ୍ତ ରହିପାରିଥାନ୍ତା ବା ରହିବା ଉଚିତ୍ ଥିଲା, ଏକଥା କହିହେବ ନାହିଁ। ତତ୍କାଳୀନ ବଙ୍ଗ ସାହିତ୍ୟର ସ୍ରଷ୍ଟା ରବୀନ୍ଦ୍ରନାଥଙ୍କର 'ହୁବହୁ' ଅନୁକରଣକୁ ଓଡ଼ିଆ ସାହିତ୍ୟର ଏକ ଯୁଗ ବୋଲି ନିର୍ଦ୍ଧାରଣ କରିବା ଅଭିବୃଦ୍ଧ ସାହିତ୍ୟ ସମାଲେଚାନା ବୋଲି କୁହାଯାଇ ନ ପାରେ। ଏହି ସାହିତ୍ୟର ତଥାକଥିତ ମଞ୍ଚରଥୀଙ୍କ ଭିତରୁ ଜଣଙ୍କର ସାହିତ୍ୟକୃତି ସମ୍ବନ୍ଧରେ ପ୍ରଣିଧାନ କରିବାର ସୁଯୋଗ ପାଇନାହିଁ। ଅବଶିଷ୍ଟ ଚାରିଜଣଙ୍କ

ମଧ୍ୟରୁ ଦୁଇଜଣ ବଙ୍ଗଭାଷୀ ଏବଂ ଆଉ ଦୁଇଜଣ ଓଡ଼ିଆ । ଏହି ଓଡ଼ିଆ ଦୁଇଜଣଙ୍କ ମଧ୍ୟରୁ ଜଣଙ୍କର ସ୍ୱଳ୍ପକୃତି ସମାଲେଚାକମାନଙ୍କର ଦୃଷ୍ଟିକୁ ଏଡାଇ ଦେଇଛି । ଅନ୍ୟ ଜଣଙ୍କର ସାହିତ୍ୟ-ସାଧନା ଏ ଯୁଗକୁ ଏଡ଼ାଇ ଦେଇ ସ୍ୱାଧୀନତା ସଂଗ୍ରାମ ଯୁଗ ସହିତ ସମ୍ପର୍କ ରଖିପାରିଛି । ବଙ୍ଗାଳୀ ସାହତ୍ୟିକ ଦୁଇଜଣଙ୍କ ମଧ୍ୟରୁ ଜଣେ ଦିବଂଗତ ଏବଂ ତାଙ୍କ ସାହିତ୍ୟ ମଧ୍ୟ ଏ ପର୍ଯ୍ୟନ୍ତ ସମାଲୋଚକମାନଙ୍କର ବିଶ୍ଳେଷଣର ବାହାରେ । ଅନ୍ୟ ଜଣକ ଅକାଳରେ ଓଡ଼ିଆ ସାହତ୍ୟରୁ ବିଦାୟ ନେଇ ଏ ପର୍ଯ୍ୟନ୍ତ ବଙ୍ଗ ସାହିତ୍ୟର ଜଣେ ପ୍ରସିଦ୍ଧ ସ୍ରଷ୍ଟା ଏବଂ ବୋଧହୁଏ ଆଜି ପର୍ଯ୍ୟନ୍ତ ବରିଷ୍ଠ ଓ ଜ୍ୟେଷ୍ଠ ବଙ୍ଗ ସାହିତ୍ୟିକ ରୂପେ ବିରାଜମାନ କରିଛନ୍ତି ।

ମୋର କହିବାର କଥା ପ୍ରତିଷ୍ଠିତ ବ୍ରିଟିଶ ସାମ୍ରାଜ୍ୟ ବିରୋଧରେ ସଂଗ୍ରାମ କରି ଯେଉଁ ଦେଶ ସ୍ୱାଧୀନତା ଲାଭ କଲା, ସେ ଦେଶର ସାହିତ୍ୟ ସେ ସମୟର ଘଟଣାବଳୀକୁ ଉଲ୍ଲେଖ କରି ଏବଂ ତତ୍କାଳୀନ ଲୋକଜୀବନକୁ ଅନୁପ୍ରାଣିତ କରି ସଂଗ୍ରାମ ଅଭିମୁଖୀ କରି ପାରିଥିଲା, ସେ ସମ୍ବନ୍ଧରେ ଓଡ଼ିଆ ସାହିତ୍ୟ ସମାଲୋଚକମାନଙ୍କର କୌଣସି ଦୃଷ୍ଟିପାତ ନ ହେବାର କାରଣ ଅନୁସରଣୀୟ ।

ସେ ଯାହା ହେଉ, ଏତେ ବଡ ମହାନ୍ ବ୍ରିଟିଶ ସାମ୍ରାଜ୍ୟ ବିରୋଧରେ ସଂଗ୍ରାମ କରି ପୁଣି ଜୟଲାଭ କରିବା ଅଧ୍ୟୟନଶୀଳ ସମାଲୋଚକମାନଙ୍କର ଦୃଷ୍ଟିପଥାରୁଢ଼ ଯେ କାହିଁକି ନ ହେଲା, ସେ କଥା ଏ ସ୍ଥଳରେ ବିଚାର କରିବାର ନୁହେଁ । ମୋ ବିଚାରରେ ତତ୍କାଳୀନ ସାହିତ୍ୟର ସ୍ୱଭାବ ଓ ଚରିତ୍ର ସମ୍ବନ୍ଧରେ ସାମାନ୍ୟ ଦୃଷ୍ଟିପାତ କରିବା ଅତି ପ୍ରୟୋଜନ ।

ମୋର ପିଲାଦିନର କଥା ମନେ ପଡୁଛି । ସଂସ୍କୃତ ବ୍ୟାକରଣ ପଢ଼ିଲା ବେଳେ ମୁଁ ବଙ୍ଗଳା ଅକ୍ଷର ଚିହ୍ନିବାକୁ ବାଧ୍ୟ ହୋଇଥିଲି । କାରଣ ଓଡ଼ିଆରେ ସେତେବେଳେ ସଂସ୍କୃତ ବ୍ୟାକରଣ ବାହାରି ନ ଥିଲା । ସୁତରାଂ ଆମକୁ ବଙ୍ଗଳାରେ ବ୍ୟାକରଣ ପଢ଼ିବାକୁ ପଡୁଥିଲା । ମୋର ସ୍ୱର୍ଗତ ପିତା ମୋ ସାହିତ୍ୟ ସାଧନା ପଥରେ ଇଙ୍ଗିତ ଦେଇ ସେତେବେଳେ କହିଥିଲେ ଯେ ସାବଧାନ ! ବଙ୍ଗଳା ସାହିତ୍ୟର ଭାଷାକୁ ଅନୁକରଣ କରି କୌଣସି କାଳେ ଲେଖିବୁ ନାହିଁ । ସେଥିପାଇଁ ମୁଁ ପ୍ରକୃତରେ ମୋ ସାହିତ୍ୟ ସୃଷ୍ଟି କଲାବେଳେ ଅତି ସତର୍କ ରହିଥାଏ । ଏପରିକି ରବୀନ୍ଦ୍ର ନାଥଙ୍କ ସାହିତ୍ୟକୁ ଅନୁକରଣ

କରି ଯେତେବେଳେ ଓଡ଼ିଶାରେ ଏକ ସାହିତ୍ୟ ସମାଜ ସୃଷ୍ଟି ହୋଇଗଲା, ସେତେବେଳେ ମୁଁ ଲକ୍ଷ୍ୟ କଲି, ଓଡ଼ିଆ ଭାଷା ଉପରେ ବଙ୍ଗଳା ଭାଷାର ପ୍ରଭାବ ଅତି ନିଖୁଣ ଭାବରେ ପଡ଼ିଯାଉଛି। ଏହାର ପ୍ରମାଣ ସ୍ୱରୂପ ଓଡ଼ିଆ ସାହିତ୍ୟର ତଥାକଥିତ 'ସବୁଜ ଯୁଗ'। ସବୁଜ ଶବ୍ଦଟି ପ୍ରକୃତରେ ବଙ୍ଗଳା 'ସବୁଜ' ଶବ୍ଦରୁ ଆହରିତ। ଓଡିଆରେ ତତ୍‌ପୂର୍ବ କୌଣସି ସାହିତ୍ୟରେ ସବୁଜ ଶବ୍ଦର ଦୃଷ୍ଟାନ୍ତ ନାହିଁ। ଏବେ ମଧ୍ୟ କଥିତ ଭାଷାରେ ସବୁଜ ଶବ୍ଦର ବ୍ୟବହାର କ୍ୱଚିତ ଦେଖାଯାଇଥାଏ। ଓଡ଼ିଆରେ ଶାଗୁଆ ଶବ୍ଦ ଶ୍ରୁତି ମଧୁର ନୁହେଁ ବୋଲି କେତେକଙ୍କ ମୁହଁରୁ ମୁଁ ଶୁଣିଛି। କିନ୍ତୁ ମୁଁ ପିଲାଦିନେ ସ୍ୱର୍ଗତଃ ଚନ୍ଦ୍ରମୋହନ ମହାରଣାଙ୍କ ଦ୍ୱାରା ଲିଖିତ ପାଠ୍ୟପୁସ୍ତକର କୌଣସି ଏକ ପଦ୍ୟରେ 'ହରିତ' ଶବ୍ଦର ବ୍ୟବହାର ହୋଇଥିବାର ମନେ ପଡୁଛି। 'ହରିତ' ଶବ୍ଦ ପରିବର୍ତ୍ତେ 'ସବୁଜ' ଶବ୍ଦର ବଙ୍ଗଭାଷାରୁ ଆହରଣ କରିବାର ଯେଉଁ ପ୍ରବୃତ୍ତି, ସେହି ପ୍ରବୃତ୍ତି ହିଁ ସବୁଜ ସାହିତ୍ୟ ସମାଜ ଗଠନ କରିଥିଲା ବୋଲି ମୋର ମନେ ହୁଏ।

କିନ୍ତୁ ଏହି ସମୟର ଅନ୍ୟାନ୍ୟ ଲେଖାବଳୀକୁ ଅଧ୍ୟୟନ କଲେ ଜଣାପଡ଼େ ଯେ ତତ୍‌କାଳୀନ ଇଂରାଜୀ ଶିକ୍ଷିତ ଯୁବକମାନେ ସରକାରୀ ଚାକିରୀ ପ୍ରତି ଯେତେ ଆକୃଷ୍ଟ ହେଉଥିଲେ, ସାହିତ୍ୟ ପ୍ରତି ସେମାନଙ୍କର ଶ୍ରଦ୍ଧା ସେତିକି ଅପହୃତ ହୋଇଯାଉଥିଲା। ତା' ନୋହିଥିଲେ ସେ ସମୟର ଜାତୀୟ ସାହିତ୍ୟ ପ୍ରତି ଅବହେଳା ପ୍ରଦର୍ଶନ କରିବାର ଅନ୍ୟ କୌଣସି କାରଣ ଥିଲା ବୋଲି ମୁଁ କହିବି ନାହିଁ।

୧୯୨୧ ମସିହା ବେଳକୁ ମୁଁ ଭଦ୍ରକ ହାଇସ୍କୁଲରେ ପାଠ ପଢୁଥିଲି। ମାଇନର ଶ୍ରେଣୀରେ। ସେତେବେଳେ ମୋର ଯେଉଁସବୁ ସାହିତ୍ୟ ପୁସ୍ତକ ପ୍ରତି ଦୃଷ୍ଟି ପଡ଼ିଥିଲା, ତା' ମଧ୍ୟରେ ଏବେ ମଧ୍ୟ ମନେ ରହିଛି ଯେଉଁ ପୁସ୍ତକ, ତାହା ହେଉଛି, ଡଃ ମହତାବଙ୍କ ରଚିତ 'ପଲାସୀ ଅବସାନେ।' ପଲାସୀ ଅବସାନେର ସାହିତ୍ୟ ସମାଲୋଚନା ଏ ଯୁଗର ସମାଲୋଚକମାନଙ୍କ ମଧ୍ୟରୁ କେହି କରିଛନ୍ତି କି ନାହିଁ ମୋତେ ଜଣାନାହିଁ। କିନ୍ତୁ କବିତାର ଭାବଧାରା ଏତେ ପ୍ରଚଣ୍ଡ ଭାବରେ ତୀକ୍ଷ୍ଣ ଥିଲା ଯେ ସେହି ତରୁଣାବସ୍ଥାରେ ମଧ୍ୟ ତାହା ମୋତେ ଆକ୍ରାନ୍ତ କରି ପକାଇଥିଲା। ତାହା କ୍ରମଶଃ ମୋ ଚିତ୍ତରେ ଯେଉଁ ଜାତୀୟତାବୋଧ ଜନିତ ତତ୍‌କାଳୀନ ବ୍ରିଟିଶ ସାମ୍ରାଜ୍ୟ ବିରୋଧରେ

ବିଦ୍ରୋହ ସୃଷ୍ଟି କରିଥିଲା, ତାହାରି ପ୍ରଭାବ ହେତୁ ମୁଁ ସ୍କୁଲ ଛାଡିଦେଇ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲି ।

ସ୍ୱର୍ଗତଃ ହରେକୃଷ୍ଣ ମହତାବଙ୍କର 'ପ୍ରତିଭା' ପ୍ରଭୃତି ପୁସ୍ତକରେ ମଧ୍ୟ ସଂଗ୍ରାମଶୀଳ ସାହିତ୍ୟ ସୂଚନା ପରିଲକ୍ଷିତ ହୁଏ । ସେହି ସମୟରେ ଯେଉଁସବୁ ସାହିତ୍ୟ ଲୋକଜୀବନକୁ ସ୍ପର୍ଶ କରିପାରିଥିଲା, ସେ ସମ୍ବନ୍ଧରେ ବିଶେଷ ଆଲୋଚନା ହେବାର ମୁଁ ଏ ପର୍ଯ୍ୟନ୍ତ ଲକ୍ଷ୍ୟ କରିନାହିଁ । ସ୍ୱର୍ଗତଃ ବାଞ୍ଛାନିଧି ମହାନ୍ତି, ସ୍ୱର୍ଗତଃ ବୀରକିଶୋର ଦାସ, ସ୍ୱର୍ଗତଃ ରାମ ପ୍ରସାଦ ସିଂ, ସ୍ୱର୍ଗତଃ ଗୋଦାବରୀଶ ମିଶ୍ର, ସ୍ୱର୍ଗତଃ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚନା ସେ ସମୟର ଜନଜୀବନକୁ ଯେପରି ଜାଗରିତ କରିଥିଲା, ଆଧୁନିକ ସମାଲୋଚକମାନଙ୍କର ଧାରଣାରୁ ସେ ବହିର୍ଭୂତ ହୋଇ ରହିଯାଇଛି । ଏହି ସାହିତ୍ୟ ଯୁଗକୁ 'ଜାତୀୟ ସାହିତ୍ୟ ଯୁଗ' ବୋଲି କହିବା ପରିବର୍ତ୍ତେ ବଙ୍ଗ ସାହିତ୍ୟର ଅନୁକରଣରେ ଲିଖିତ ରଚନାବଳୀର ପ୍ରାୟ ଦଶବର୍ଷ କାଳକୁ ଗୋଟିଏ ଯୁଗ ଆଖ୍ୟା ଦେଇ ବର୍ଣ୍ଣନା କରିବାର ସ୍ପୃହା ମୋ ବିଚାରରେ ଅତି ଘୃଣ୍ୟ ।

କାନ୍ତ କୁଟୀର, ଡି/୪, ଲେବର କଲୋନୀ,
ଖାରବେଳନଗର, ଭୁବନେଶ୍ୱର



# ଅଦ୍ୱିତୀୟ ସାମ୍ବାଦିକ ମହତାବ

**ଏଫତୁରାନନ୍ଦ**

ତାରିଖ ବର୍ଷ ଇତ୍ୟାଦି କଥା ମୋର ମନେ ନାହିଁ, ଯେଉଁଟା କି ପ୍ରବନ୍ଧରେ ନିହାତି ଦରକାର। ମହତାବ ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ। ପ୍ରଜାତନ୍ତ୍ର ନୂଆ ହୋଇ ସ୍ଥାପିତ ହୋଇଥିଲା। ବିହାରିବାଗରେ ଏକ ବିରାଟ ଅନୁଷ୍ଠାନ ଗଢ଼ା ହୋଇସାରିଥାଏ। ଏଠାରୁ ପ୍ରଜାତନ୍ତ୍ର କାଗଜ ଏବଂ ଝଙ୍କାର ନିୟମିତ ଭାବେ ବାହାରୁଥିଲା। ଏ ଦୁଇଟି ଛଡ଼ା ପିଲାଙ୍କ ପାଇଁ ମୀନାବଜାର ଓ ମହିଳାଙ୍କ ପାଇଁ ନାରୀ ବିଭାଗ ଥିଲା। ପ୍ରଜାତନ୍ତ୍ର ପାଇଁ ଶଶୀ ମିଶ୍ରେ ନିଯୁକ୍ତ ହୋଇଥିଲେ। ଆସେମ୍ବଲି ବସିବା ସମୟ ଛଡ଼ା ଆଗେ ସବୁବେଳେ ମହତାବ ସକାଳୁ ଆସି ପ୍ରଜାତନ୍ତ୍ର ଅଫିସରେ ସବୁକଥା ବୁଝନ୍ତି। ପ୍ରତିଦିନ ଗୋଟାଏ ଛୋଟକାଟିଆ ସଭା ମଧ୍ୟ ହେଉଥାଏ। ସେଠି ସମସ୍ତେ ଜମୁଥିବା ଲୋକଙ୍କର ଖବର ଅନ୍ତର ମହତାବ ବୁଝୁଥିଲେ ଏବଂ ପ୍ରତିକାର ମଧ୍ୟ କରୁଥିଲେ। ଏଟା ଥିଲା ତାଙ୍କର ଦୈନନ୍ଦିନ କାରବାର। ଝଙ୍କାର ପତ୍ରିକାଟି ଯେ ବାହାରୁଥିଲା, ତା'ର ବୁଝାବୁଝି ସେଇ ଶଶୀ ମିଶ୍ରେ କରୁଥିଲେ। ମୋଟ ଉପରେ ଶଶୀ ମିଶ୍ରେ ପ୍ରଜାତନ୍ତ୍ର ଓ ଝଙ୍କାରର ଖବର ଅନ୍ତର ମହତାବଙ୍କୁ ନିୟମିତ ଭାବେ ଦେଉଥାଆନ୍ତି।

ଝଙ୍କାରଟି ଭଲ ହେଉଥାଏ। ଆମେ ସବୁ ପଢୁଥାଉଁ। ଗୋଟିଏ ସଂଖ୍ୟାରେ ମହତାବ ନିଜେ ଗୋଟିଏ ପ୍ରବନ୍ଧ ଲେଖିଥିଲେ  ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ - ଏ ତିନି ବିଷୟରେ ଆମର କେବଳ ବର୍ତ୍ତମାନଟିକୁ ଧରିବା ଉଚିତ। ଅତୀତ ଓ ଭବିଷ୍ୟତରେ ଆମର ମୁଣ୍ଡ ଖେଳାଇବା କିଛି ଦରକାର ନାହିଁ। ଅଯଥାରେ ଅତୀତ ଓ ଭବିଷ୍ୟତ ପାଇଁ ମୁଣ୍ଡ ନ ଘାଣ୍ଟି ଆମର କେବଳ ବର୍ତ୍ତମାନଟିକୁ ଧରିବା ଉଚିତ। ଏ ଲେଖାଟି ମୁଁ ପଢ଼ିବା ମାତ୍ରେ ମୋ ମନଟା ଆମ୍ବିଳା ହୋଇଗଲା। ତାଙ୍କ କଥାକୁ ମୋଟେ ପସନ୍ଦ କରିପାରିଲି ନାହିଁ। ମନେ ମନେ ଭାବିଲି - ନା, ଏ କଥାକୁ ମୁଁ କେବେହେଲେ ସମର୍ଥନ କରି ପାରିବି ନାହିଁ। ସାଙ୍ଗେ ସାଙ୍ଗେ ମହତାବଙ୍କ ପାଖକୁ ଗୋଟାଏ ଚିଠି ଲେଖିଲି- ଆଜ୍ଞା, ଆପଣ ଝଙ୍କାରରେ ଯେଉଁ ଲେଖିଛନ୍ତି ଯେ ଆପଣଙ୍କର

ଅତୀତ ଓ ଭବିଷ୍ୟତ ବିଲ୍‌କୁଲ ଦରକାର ନାହିଁ, ଆପଣଙ୍କୁ ଦରକାର କେବଳ ବର୍ତ୍ତମାନ। ବର୍ତ୍ତମାନଟା ଯେ ବେଶୀ ଦରକାର ଏଟା ଠିକ୍ କଥା। କିନ୍ତୁ ଆପଣ ଯେପରି ଭାବରେ ଅତୀତ ଓ ଭବିଷ୍ୟତକୁ ଦୂର୍ ଦୂର୍ କରିଦେଇଛନ୍ତ, ତାହା କେବେହେଲେ ଗ୍ରହଣଯୋଗ୍ୟ ନୁହଁ। ଆପଣ ବର୍ତ୍ତମାନ ଯାହା କିଛି କରୁଛନ୍ତି, ତା'ର ଗୋଟିଏ କିଛି ଉଦ୍ଦେଶ୍ୟ ଅଛି। ସେ କାମଟି ହେଲା-ଲକ୍ଷ୍ୟସ୍ଥଳରେ ପହୁଞ୍ଚାଇବା। ଆପଣଙ୍କର ଯଦି ଭବିଷ୍ୟତ ଅର୍ଥାତ୍ ଲକ୍ଷ୍ୟସ୍ଥଳ ଠିକ ନ ରୁହେ, ତେବେ ଆପଣ ସବୁବେଳେ ଅମଡ଼ା ମାଡ଼ିବା ସାର ହେବ। ସେଇ ଲକ୍ଷ୍ୟସ୍ଥଳକୁ ଯିବା ଲାଗି ଆପଣଙ୍କୁ ଅତୀତର ସ୍ମୃତି ନିଶ୍ଚିତ ଭାବେ ନବାକୁ ହେବ। କେଉଁ ପଥ ଦେଇ ଗଲେ ଆପଣ କିଛି କଣ୍ଟାଝଟା ନ ମାଡ଼ି ଭବିଷ୍ୟତର ଲକ୍ଷ୍ୟସ୍ଥଳରେ ସୁରୁଖୁରୁରେ ପହଞ୍ଚିବେ, ତାହା ଆପଣଙ୍କ ଅତୀତର ସ୍ମୃତିକୁ ଉଖାରି ସଂଗ୍ରହ କରିବେ। ସେତକ ଆପଣ କଲେ, ଅତୀତକୁ ଉଖାରିଲେ ଆପଣ କେଉଁ ବାଟ ଦେଇ ଯିବେ, କିପରି ଯିବେ, ସେଗୁଡ଼ିକ ସେଥିରୁ ପାଇବେ। ଫଳରେ ଆପଣ ଠିକ୍ ରାସ୍ତା ଦେଇ ଭବିଷ୍ୟତର ଲକ୍ଷ୍ୟସ୍ଥଳରେ ଯାଇ ପହଞ୍ଚି ପାରିବେ। ଏଣୁ ଆପଣଙ୍କ ପକ୍ଷେ ବର୍ତ୍ତମାନର କାମ ପାଇଁ ଉଭୟ ଭବିଷ୍ୟତ ଓ ଅତୀତ ନିଶ୍ଚିତ ଭାବେ ଦରକାର। ଆପଣ ଆପଣଙ୍କ ପ୍ରବନ୍ଧରେ ତା ଦରକାର ନୁହେଁ ବୋଲି ଲେଖିଲେ କିପରି। ଯଦି ମୋର ଏ ଲେଖାର କାଟପାଣି ଜାଣିଥିବେ, ତେବେ ଆସନ୍ତା ସଂଖ୍ୟା ଝଙ୍କାରରେ ଦୟା କରି ପ୍ରକାଶ କରନ୍ତୁ।

ଚିଠଟା ପଠେଇଦେଲି। କିନ୍ତୁ ମନରେ ଭାରି ଦୁଡୁଗୁଡୁ ହେଲି। ମନରେ ଭାବୁଥାଏ ଆରେ ବାବା। ସେ ହେଉଛନ୍ତି ଓଡ଼ିଶାର ଭାଗ୍ୟବିଧାତା। ଏତକ ନ ଭାବି ସେତକ ଲେଖିଦେବା ମୋର ଠିକ୍ ହେଲାନାହିଁ। ସେତେବେଳକୁ କିନ୍ତୁ ଚିଠି ଚାଲି ଯାଇଥାଏ।

ମୁଁ ତ ସେତେବେଳେ 'ଡଗର'ର ପରିଚାଳନା ସମ୍ପାଦକ ଥାଏଁ। ଜଣେ ଜଣେ ଲେଖକଙ୍କର ଲେଖାକୁ ଯଦି ନିତ୍ୟାନନ୍ଦବାବୁ ନାପସନ୍ଦ କରି ମୋତେ ଫେରେଇ ଦଉଥିଲେ, ସେଇଠି ଗୋଟିଏ ଗୋଟିଏ ତୁମୁଳକାଣ୍ଡ ହେଉଥିଲା ନିତ୍ୟାନନ୍ଦବାବୁ ତ ଭୁବନେଶ୍ୱରରେ ରହୁଥା'ନ୍ତି, ତାଙ୍କୁ ବ୍ୟକ୍ତିଗତ୍ ଭାବେ କିଛି କହିବାର ମଉକା ସେମାନଙ୍କର ନ ଥାଏ। ଉପେକ୍ଷିତ ଲେଖକ ମୋ ପାଖକୁ ଆସି ମୋ ଉପରେ ଅଜସ୍ର ଗାଳି ବର୍ଷଣ କରି ଯାଆନ୍ତି। ସେତିକି କରି ହେଲେ ସେଥିରୁ କ୍ଷାନ୍ତ ହେଉଥାନ୍ତେ, ତା' ନୁହେଁ। ତାଙ୍କର ବୋଧେ ମନେ

ପଡ଼ିଯାଉଥାଏ, ଆରେ ଏ ଲେଣ୍ଟି ମୁତଫରକା ଲୋକଙ୍କୁ କହି କିଛି ଲାଭ ନାହିଁ। ସଙ୍ଗେ ସଙ୍ଗେ ସେମାନେ ନିଜ କଥାକୁ ବଦଳାଇ ଦିଅନ୍ତି- 'ଏତକ ତୁମ ନିତ୍ୟାନନ୍ଦ ବାବୁଙ୍କୁ କହିଦେବ।' ମୁଁ ପେଟରେ ମୋର ନିଜର କ୍ରୋଧତକ ଚାପି ତାଙ୍କୁ ହଁ, ହାଁ କହି ବିଦା କରିଦିଏଁ ଏବଂ ତାଙ୍କ କଥାର ସାରାଂଶ ଟିକିଏ ନରମେଇ ଦେଇ ନିତ୍ୟାନନ୍ଦବାବୁଙ୍କ ପାଖରେ ପରିବେଷଣ କରିଦିଏଁ। ସେ ମଧ ହସରେ ତାକୁ ଉଡ଼େଇ ଦିଅନ୍ତି। ସେ କହନ୍ତି- ଆଜିକାଲିକାର ଯୁବକ ଲେଖକମାନେ ଏକାବେଳକେ ଓଳିଆରୁ ପଡ଼ି ଗଜା ହୋଇଯାଇଛନ୍ତି। ତାଙ୍କ କଥାଗୁଡ଼ିକ ଷୋଳଅଣା ଠିକ।

ଯେଉଁଠି ଏ ଓଳିଆରୁ ପଡ଼ି ଗଜା ହୋଇଥିବା ଲେଖକମାନେ ପ୍ରତିଷ୍ଠା ନ ଥାଇ ସୁଦ୍ଧା ଏଡ଼େ କ୍ରୋଧ ଦେଖାନ୍ତି ଓ ସଙ୍ଗେ ସଙ୍ଗେ ଗାଳିଗୁଲଜ ବି କରିଦିଅନ୍ତି, ସେଠି ମହତାବଙ୍କ ଭଳି ଓଡ଼ିଶାର ଭାଗ୍ୟ ବିଧାତାଙ୍କର କଥାକୁ ଏପରି ଭାବରେ କାଟି ଦେବାଟା ମୋ ପକ୍ଷେ ନିଶ୍ଚିତ ଏକ ଗୁରୁତର ପ୍ରମାଦ। ହଉ, ଯା' ହେଉଛି ହେଉ। କିନ୍ତୁ ସର୍ବଦା ଶଙ୍କିତ ହୋଇ ରହିଲି।

କଲେଜର ଛାତ୍ରମାନେ ବହୁ ସଂଖ୍ୟାରେ ମହତାବଙ୍କ ପାଖେ ରୁଣ୍ଡ ହେଉଥିଲେ। ମୁଁ ଚିଠି ଦେବାର ମାତ୍ର ଦି' ଚାରି ଦିନ ପରେ ମହତାବ ତାଙ୍କ ପାଖକୁ ଯାଇଥିବା ମୋର ଭାଇ ଶ୍ୟାମସୁନ୍ଦର ମିଶ୍ରଙ୍କୁ କହିଲେ- ତମେ ଫତୁରାନନ୍ଦଙ୍କୁ ଦିନେ ଏଠାକୁ ନେଇଆସ। ଶ୍ୟାମ ଆସି ମୋତେ ତାହା କହିଲା ଓ ତହିଁ ଆରଦିନ ଯିବାକୁ ମୋତେ କହିଲା। ମନେ ମନେ ଭାବିଲି- ସରିଲାରେ ବାବା, ମୋ କଥା ସରିଲା। ପୁଣି ମନରେ ଦମ୍ଭ ବାନ୍ଧିଲି। ହଉ, ଦି' ପଦ କହିବେ ତ କହିବେ। କିଛି ଠେଙ୍ଗାରେ ତ ପିଟି ପକାଉନାହାନ୍ତି। କୁଣ୍ଠୁକୁଣ୍ଠୁ ହୋଇ ତହିଁ ଆର ଦିନ ତା' ସାଙ୍ଗରେ ତାଙ୍କ ପାଖକୁ ଗଲି। ବାଟଯାକ 'ଦୁର୍ଗା ଦୁର୍ଗା' ଜପି ଯାଉଥାଏଁ। ମୁଁ ପହଞ୍ଚିବା ପୂର୍ବରୁ ମହତାବ ସବୁ କିଛି ମୋ ବିଷୟରେ ସଂଗ୍ରହ କରିସାରିଥିଲେ। ସେଠି ଶଶୀ ମିଶ୍ରେ ଆଉ ଅନ୍ୟମାନେ ମଧ ରହିଥିଲେ। ମୁଁ ମହତାବଙ୍କ ଆଗରେ ନବେ ଡ଼ିଗ୍ରୀଆ ନମସ୍କାରଟାଏ ପକାଇଲି। ସେ ବସିବାକୁ କହିଲେ। ମୁଁ ବସିଲି। ସେତେବେଳକୁ ମୋ ଛାତି ଦାଉଁ ଦାଉଁ ପଡୁଥାଏ। ତାଙ୍କ ପାଟିରୁ ବାହାରିଲା- ଫତୁରାନନ୍ଦ, ତମ ଚିଠିଟି ଭଲ ଭାବରେ ପଢ଼ିଛି। ତା' ମୋତେ ଯଥେଷ୍ଟ ଭଲ ଲାଗିଛି। ମୁଁ ମୋ ଲେଖାର ସଂଶୋଧନ କରି ଆର ସଂଖ୍ୟାରେ

ଲେଖିବି। ଯାହାହେଉ ମୋ ଭୁଲଟା ମୁଁ ବୁଝିପାରି ତମର ସମସ୍ତ କଥା ଗ୍ରହଣ କରିନେଇଛି। ତା'ପରେ ଅନେକ କିଛି କଥା କହି ସେ ଶଶୀ ମିଶ୍ରଙ୍କୁ ପାଖକୁ ଡ଼ାକି ତାଙ୍କୁ କହିଲେ। ଦେଖ, ଆଜିଠାରୁ ପ୍ରଜାତନ୍ତ୍ରରେ ସାପ୍ତାହିକ ଯେଉଁ ପରିହାସ ଶୀର୍ଷକ ହାସ୍ୟ ରସାତ୍ମକ ଲେଖାଟିର ସ୍ତମ୍ଭ ବାହାରେ, ତାହା ସେଇ କେବଳ ଲେଖିବେ। ତମେ ଲୋକ ପଠେଇ ତାଙ୍କଠୁଁ ଲେଖା ଆଣିବ। ତାଙ୍କ କଥା ଶୁଣି ମୋ ଛାତି ଧୁଡୁଧୁଡୁ ବନ୍ଦ ହୋଇଗଲା। ମୁଁ ଟିକେ ସଜଖେଇ ବସିପଡ଼ିଲି। ମୋତେ ଧିକ୍କାର କରିବା ପରିବର୍ତ୍ତେ ସେ ଯେଉଁ ସମ୍ମାନଟି ମୋ ଉପରେ ଲଦି ଦେଲେ, ସେଥିରେ ମୁଁ ଅଭିଭୂତ ହୋଇପଡ଼ିଲି। ପୁଣି ମୁଁ ତାଙ୍କୁ ସାହସ କରି କହିଲି- ଆଜ୍ଞା, ଆପଣଙ୍କ ମତ ସହିତ ମୋ ମତ କେବେ ହେଲେ ଖାପ ଖାଇବ ନାହିଁ। ତେଣୁ ମୋତେ ପ୍ରଜାତନ୍ତ୍ରରେ ଲେଖିବା ସମ୍ଭବ ହେବନାହିଁ। ଆପଣଙ୍କ କାଗଜରେ ଆପଣଙ୍କୁ ମୁଁ କେବେହେଲେ ସମାଲୋଚନା କରିପାରିବି ନାହିଁ। ସେ ସାଙ୍ଗେ ସାଙ୍ଗେ କହିଲେ- ତୁମକୁ ମୁଁ ପୂରା କ୍ଷମତା ଦେଲି। ମୋ ବିରୋଧରେ ତୁମର ଯାହା ବକ୍ତବ୍ୟ ଥାଏ, ତାହା ପ୍ରକାଶ କରିପାରିବ। ତାଙ୍କର ସେଇ ଦୁଇ-ତିନି ଦିନ ଭିତରେ ଆମେରିକା ଯିବାର ଥାଏ। ସେ ଶଶୀ ମିଶ୍ରଙ୍କୁ ଡାକି କହିଲେ- ହଇ ହୋ ଶଶୀ, ଦେଖ, ମୁଁ ତୁମକୁ ଖୋଲା ମନରେ ଆଦେଶ ଦେଉଛି। ଫତୁରାନନ୍ଦ ଯାହା କିଛି ମୋ ବିରୁଦ୍ଧରେ ଲେଖିବେ, ତାହା ସବୁ ଅବିକଳ ପ୍ରଜାତନ୍ତ୍ରରେ ଛାପି ଦେବ। ସେଥିରେ ହାତ ଦେବନି। ଅନ୍ତତଃ ମୁଁ ଆମେରିକାରୁ ଫେରିବା ପର୍ଯ୍ୟନ୍ତ ତାଙ୍କୁ ସମ୍ଭାଳି ନେବ। ସେଠି ଠିଆ ହୋଇଥିବା ସମସ୍ତେ ଆଜ୍ଞା ହଁ, ଆଜ୍ଞା ହଁ ବୋଲି କହି ସମ୍ମତି ଜଣାଇଲେ। ତା'ପରେ ଆଉ କେତେକ ବିଷୟରେ ଓ ମୋ ଆଖି ବିଷୟରେ ଖବର ନେଇ ମୋତେ ସେ ବିଦାୟ ଦେଲେ।

ତିନିଟି କି ଚାରିଟି ଲେଖା ମୋର ଅବିକୃତ ଅବସ୍ଥାରେ ବାହାରିଲା। ଏହା ପରେ ମୋର ଜିଦ୍‌ଖୋରିଆ ମନୋଭାବ ଦେଖା ଦେଲା। ଜଣେ ହରିଜନ ନେତା ଖବରକାଗଜରେ ଲେଖିଥିଲେ ଯେ ସେମାନଙ୍କ ପ୍ରତି ଯଦି ହେଳା କରାଯାଏ, ତେବେ ତାଙ୍କ ଦଳ ସରକାରୀ ରଥକୁ ଅଚଳ କରିଦେବ। ଯାକୁ ଇ ମୁଁ ବ୍ୟଙ୍ଗ କରି ଲେଖିଲି- ସେମାନେ କ'ଣ କରିପାରିବେ, ଜୋରଜୁଲମ କି ଆଉ କି ଧରଣର ବିପ୍ଳବ କରି ସରକାରକୁ ଅଚଳ କରିଦେବେ? ହଁ ଗୋଟାଏ ଉପାୟ ଅଛି। ସେତିକିବେଳେ ଗୋଟିଏ ଘଟଣା ଘଟିଥାଏ।

ରାଣୀହାଟ ରୋଡ ପରେ ଗୋଟିଏ ପାଣିଆ ମଇଳା ଡ୍ରମ ହଠାତ୍ ତଳେ ପଡ଼ି ଭାଙ୍ଗି ବି'ଗଡ଼ ହେଇଗଲା। ରାସ୍ତାରେ ପ୍ରାୟ ୪୦/୫୦ଫୁଟ ଲମ୍ବ ଯାଏଁ ତରଳ ବସ୍ତୁ ସବୁ ବ୍ୟାପିଗଲା। ସେତେବେଳେ ସମୟ ପ୍ରାୟ ୧୦ଟା କି ୧୧ଟା॥ ସେ ଦୁର୍ଗନ୍ଧରେ ବ୍ୟଥିତ ହୋଇ ସେଠାର ସମସ୍ତ ଦୋକାନପତ୍ର ପଡ଼ିଗଲା। ଏକ ଆଂଶିକ ହରତାଳ ସେଠି ହୋଇଗଲା। ସେପାଖର କାର୍ ଓ ଅନ୍ୟାନ୍ୟ ଗାଡ଼ିମାନେ ସେଇଠୁ ଫେରିଗଲେ। ଏକଡ଼େ ମଧ୍ୟ ସେୟା ହେଲା। ସାରା ଦିନ ଓ ରାତି ସଂପୂର୍ଣ୍ଣ ହରତାଳ ହୋଇଗଲା। ଏହିପରି ଘଟଣା ଯଦି ସେମାନେ ସବୁ ସରକାରୀ ଦପ୍ତରମାନଙ୍କ ପାଖରେ କରିଦିଅନ୍ତି, ତେବେ ସରକାରୀ ରଥ (କାର୍) ସବୁ ଅଚଳ ହୋଇଯିବ। କେହି ଆଉ ତା' ଭିତରକୁ ଯାଇ ଆସି ପରିବେନି। ଶଶୀ ମିଶ୍ର ଓ ଅନ୍ୟାନ୍ୟମାନେ ମୋ ପାଖକୁ ଜରୁରୀ ଖବର ଦେଲେ ଯେ ଏଥିରେ ହରିଜନମାନେ ବେଶୀ ଉତ୍କ୍ଷିପ୍ତ ହୋଇ ଉଠିବେ। ଯାହା କି ସରକାରଙ୍କର ବିଲ୍‌କୁଲ୍ ଇଚ୍ଛା ନାହିଁ। ତେଣୁ ଆପଣ ଆଉ ଗୋଟିଏ ଲେଖା ଦିଅନ୍ତୁ।

ମୁଁ କିନ୍ତୁ ଏକଜିଦିଆ ମ୍‌ନୋଭାବ ଧରି ତାଙ୍କୁ କହିଲି- ମହତାବ ଯାହା କହିଥିଲେ ତାଙ୍କୁ ଆପଣ ପାଳନ କରୁ ନାହାନ୍ତି। ତେଣୁ ମୁଁ ଆଉ ମୋଟେ ଲେଖା ଦେବିନି। ଯେତେ ବୁଝେଇଲେ ବି ମୁଁ ମୋର ସେଇ ଏକଜିଦିଆ ପଣକୁ ବଜାୟ ରଖିଲି। ସେମାନେ ନାଚାର ହୋଇ ଚୁପଚାପ ରହିଲେ।

ଆମେରିକାରୁ ଫେରିବା ପରେ ମହତାବ ଆସି ମୋତେ ବୁଝେଇଲେ। କିନ୍ତୁ ମୁଁ ମୋର ଦୁର୍ଭାଗ୍ୟ ସୃଷ୍ଟି କରିବାରେ ସିଦ୍ଧ ହସ୍ତ ଥିଲି। ଏହି ସାମାନ୍ୟ କଥାରେ ମୁଁ ଯେ ଏପରି ଔଦ୍ଧତ୍ୟ ଦେଖାଇବି, ତା' ମୁଁ ସେତେବେଳେ ବୁଝି ନ ଥିଲି। ଯାହାହେଉ ନିଜ ଗାତ ନିଜେ ଖୋଳି ସେଥିରେ ପଶି ମାଟି ଚଲେଇ ଦେଲି। ଆଉ କିଏ ହେଇଥିଲେ ସେ ମୋ ପିଚାରେ ନାତ ମାରି କହିଥାନ୍ତା- ଯା'ବେ ଯା, କ'ଣ କରୁଚୁ କର ଆଉ ମର। କିନ୍ତୁ ମହତାବଙ୍କ ଉଦାରତା ମୁଁ ଆଜିଯାଏଁ ଭୁଲି ପାରି ନାହିଁ। ନିଜର ମୂର୍ଖତା ପାଇଁ ମୁଁ ନିଜକୁ ଧିକ୍‌କାରୀ ଚୁପଚାପ ରହିଲି।



# ମହତାବ ବାବୁ—କିଏ, କାହିଁକି ?

**ବାଙ୍କବିହାରୀ ଦାସ**

ବହୁଗୁଣର ଆଧାର ମହତାବ ବାବୁ। ସେଇଥିପାଇଁ ସେ ଯୁଗଜନ୍ମା। ଓଡ଼ିଶାପ୍ରଦେଶ ଗଠନ ପରେ ଆଜିପର୍ଯ୍ୟନ୍ତ ଯେଉଁମାନେ ଆମର ସ୍ମରଣୀୟ ହୋଇ ରହିଛନ୍ତି, ତାଙ୍କ ମଧ୍ୟରେ ସେ ସବୁଠାରୁ ମୁଖ୍ୟ। ସ୍ୱାଧୀନତାପ୍ରାପ୍ତି ପର୍ଯ୍ୟନ୍ତ ତାଙ୍କର ଭୂମିକା ଏକ ସଂଗ୍ରାମୀ ବା ବିଦ୍ରୋହୀର ଭୂମିକା। ପରବର୍ତ୍ତୀ କାଳରେ ଓଡ଼ିଶା ଗଠନରେ ତାଙ୍କର ଅବଦାନ ମଧ୍ୟ ଅତୁଳନୀୟ। ପୂର୍ବର ଲୋକସମ୍ପର୍କ, ସାହସିକ ଗୁଣ, ଅଭିଜ୍ଞତା ପରବର୍ତ୍ତୀକାଳର ଦାୟିତ୍ୱ ତୁଲାଇବାରେ ତାଙ୍କୁ ବହୁତ ସାହାଯ୍ୟ କରିଥିଲା।

ଅନେକ ସମୟରେ ଦେଖାଯାଏ, ଯେଉଁମାନେ ସଂଗ୍ରାମର ପୁରୋଧା ଥାଆନ୍ତି, ସେମାନେ ପ୍ରଶାସନିକ କାର୍ଯ୍ୟ ବା ଗଠନମୂଳକ କାର୍ଯ୍ୟର ଦାୟିତ୍ୱ ତୁଲାଇବାରେ ଅନେକ ସମୟରେ ଅଯୋଗ୍ୟ ପ୍ରମାଣିତ ହୁଅନ୍ତି। କିନ୍ତୁ ମହତାବ ବାବୁ ଏହାର ବ୍ୟତିକ୍ରମ। ଗଡ଼ଜାତ ମିଶ୍ରଣଠାରୁ ଆରମ୍ଭ କରି ସ୍ୱାଧୀନୋତ୍ତର ଓଡ଼ିଶାର ପ୍ରଶାସନିକ ଦାୟିତ୍ୱ ଓ ଓଡ଼ିଶାର ସର୍ବାଙ୍ଗୀନ ବିକାଶ ପାଇଁ ଦୃଢ଼ ପଦକ୍ଷେପ ନେବାରେ ତାଙ୍କର କୃତିତ୍ୱ ସ୍ମରଣୀୟ ହୋଇ ରହିବ। ଭାରତୀୟ ରାଜନୈତିକ ବ୍ୟକ୍ତିମାନଙ୍କର ପ୍ରଶାସନିକ ସଫଳତା ପଛରେ ସ୍ୱାଧୀନତା ସଂଗ୍ରାମର କାର୍ଯ୍ୟକ୍ରମ ଅନେକ ପରିମାଣରେ ଦାୟୀ। ଗାନ୍ଧିଜୀଙ୍କ ନେତୃତ୍ୱରେ ମୁକ୍ତି ସଂଗ୍ରାମର କର୍ମକର୍ତ୍ତାମାନଙ୍କୁ ସଂଗ୍ରାମର କାର୍ଯ୍ୟକ୍ରମ ସହିତ ରଚନାତ୍ମକ କାର୍ଯ୍ୟକ୍ରମରେ ନିଯୁକ୍ତ ହେବାକୁ ପଡୁଥିଲା। ଏହା ସେମାନଙ୍କର ରଚନାତ୍ମକ ଶକ୍ତିକୁ ମଧ୍ୟ ଉପଯୋଗ କରିବାର ଅବକାଶ ଯୋଗାଉଥିଲା। ଯେଉଁମାନେ ମହତାବବାବୁଙ୍କ ଯୁବବୟସର କାର୍ଯ୍ୟ ସହିତ ସଂପୃକ୍ତ, ସେମାନେ ଜାଣନ୍ତି ଯେ ସତ୍ୟାଗ୍ରହ ପରିଚାଳନାରେ ସେ ଯେପରି ପଟୁଥିଲେ, ଚରଖାଠାରୁ ଆରମ୍ଭ କରି କୁଟୀରଶିଳ୍ପର ବିକାଶ ପାଇଁ ଗାନ୍ଧିଜୀଙ୍କର ଯେତେ ରଚନାତ୍ମକ କାର୍ଯ୍ୟଥିଲା, ସେଥିରେ ସେ ମଧ୍ୟ ସବୁବେଳେ କାର୍ଯ୍ୟରତ ଥିଲେ।

ଏହା ସହିତ ବାଲେଶ୍ୱର ଜିଲ୍ଲା ବୋର୍ଡ଼ ଭଳି ସ୍ୱାୟତ୍ତ ଶାସନ କ୍ଷେତ୍ରରେ ପ୍ରବେଶ କରି ପ୍ରଶାସନ କ୍ଷେତ୍ରର ନାନା ସମସ୍ୟା ସହିତ ଜଡ଼ିତ ହୋଇ ସେ ବହୁ ଅଭିଜ୍ଞତା ଲାଭ କରିଥିଲେ। ତେଣୁ ପୂର୍ବର ଜୀବନର ଏହି ଅମୂଲ୍ୟ ସମ୍ପତ୍ତି ବହୁ ପରିମାଣରେ ଓଡ଼ିଶାର ଶାସନ ଓ ଓଡ଼ିଶାର ବିକାଶ କାର୍ଯ୍ୟକ୍ରମରେ ତାଙ୍କର ପ୍ରଧାନ ସାଧନ ହୋଇଥିଲା। ୧୯୪୬ ମସିହାର ସୀମିତ ଭୋଟ ବ୍ୟବସ୍ଥାରେ ନିର୍ବାଚିତ ବିଧାନସଭାର ନେତା ହୋଇ ଯେତେବେଳେ ପ୍ରଧାନମନ୍ତ୍ରୀର ଦାୟିତ୍ୱ ତୁଲାଇଲେ, ସେତେବେଳେ ସେ ଗଭୀର ଆତ୍ମବିଶ୍ୱାସର ସହିତ ପ୍ରଥମଦିନରୁ କାର୍ଯ୍ୟ ଆରମ୍ଭ କଲେ।

କଂଗ୍ରେସ ଲୋକଙ୍କର ଆଗରୁ ପ୍ରଶାସନିକ ଦକ୍ଷତା ନଥିଲା, ସୁଯୋଗ ମଧ୍ୟ କମ୍‌ଥିଲା। କିନ୍ତୁ ଲୋକସମ୍ପର୍କ ଏବଂ ରଚନାତ୍ମକ କାର୍ଯ୍ୟକ୍ରମର ଅଭିଜ୍ଞତା ସେମାନଙ୍କର ପ୍ରଶାସନିକ ସଫଳତା ପାଇଁ ମୁଖ୍ୟତଃ ଦାୟୀ। ସ୍ୱାଧୀନତାପ୍ରାପ୍ତି ପରେ ବ୍ରିଟିଶ ସରକାର ଯେଉଁ ପ୍ରଶାସନିକ କଳ ଛାଡ଼ିଗଲା, ସେଥିରେ ଯେଉଁମାନେ ଥିଲେ, ସେମାନଙ୍କର ଅଭିଜ୍ଞତା, ପଟୁତା ଏବଂ ଜ୍ଞାନ ଅତୁଳନୀୟ। କିନ୍ତୁ କଂଗ୍ରେସ ମନ୍ତ୍ରୀମାନେ ନୂଆ କରି ଶାସନ ଦାୟିତ୍ୱ ନେଲେ ହେଁ ସେମାନଙ୍କର ବିଶ୍ୱାସଭାଜନ ହେବା ଏବଂ ଅନୁରକ୍ତି ଲାଭ କରିବା ସମ୍ଭବ ହୋଇଥିଲା; କାରଣ କଂଗ୍ରେସ ନେତୃବୃନ୍ଦଙ୍କର ପୂର୍ବଲିଖିତ ଦୁଇଟି ଗୁଣ ସେଥିରେ ସାହାଯ୍ୟ କରିଥିଲା।

ବର୍ତ୍ତମାନ ପ୍ରଶାସନିକ କଳ ଏବଂ ବର୍ତ୍ତମାନର ରାଜନୈତିକ ପ୍ରଶାସନିକ ନେତୃତ୍ୱ ଦେଖିଲେ ଅନେକ ସମୟରେ ହତାଶ ହେବାକୁ ହୁଏ। ପ୍ରଶାସନିକ କଳ ଆସ୍ତେ ଆସ୍ତେ ପଟୁତା ଓ ଦକ୍ଷତା ହରାଇସାରିଲାଣି, ତାହା ସହିତ ରାଜନୈତିକ ନେତୃତ୍ୱକୁ ପରାମର୍ଶ ଦେବାର ସାହସ ଲୋପ ପାଇଲାଣି। ସେହିପରି ରାଜନୈତିକ ନେତୃତ୍ୱର ଅବକ୍ଷୟ ଦ୍ରୁତବେଗରେ ଘଟିଲାଣି। ଲୋକଙ୍କ ସହିତ ସମ୍ପର୍କ ନାହିଁ, କି ଉତ୍ତର ଦାୟିତ୍ୱ ନାହିଁ। ଗଠନମୂଳକ କାର୍ଯ୍ୟର ଅଭିଜ୍ଞତା ନଥିବାରୁ ପ୍ରଶାସନିକ ଦକ୍ଷତାର ବିକାଶ ଘଟୁନାହିଁ। ଫଳରେ ପ୍ରଶାସନିକ ଅଫିସର ଓ ରାଜନୈତିକ ନେତୃତ୍ୱ ମଧ୍ୟରେ କୌଣସି ସମ୍ପର୍କ ନାହିଁ। ସତେ ଯେପରି ଯେଝା ବାଟରେ ସିଏ ଚାଲିଛି। ଦେଶ ଗଠନରେ ଉଭୟଙ୍କ ଭୂମିକାର ଗୁରୁତ୍ୱ ନାହିଁ। ଏହି ସତ୍ୟକୁ ସ୍ୱୀକାର କରିବାକୁ ହେବ।

ଲୋକ ପ୍ରତିନିଧି ବା ରାଜନୈତିକ ନେତୃତ୍ୱର ଲୋକଙ୍କ ପ୍ରତି ଅବିଚଳିତ ଉତ୍ତର ଦାୟିତ୍ୱ ଓ ପ୍ରଶାସନିକ କଳର ଅଫିସର ବା ବ୍ୟୁରୋକ୍ରାଟଙ୍କର ଆଇନସମ୍ମତ ଅଭିଜ୍ଞତାଭିତ୍ତିକ ସାହସିକ ପରାମର୍ଶ ଦେଶର ଗଠନ ଓ ବିକାଶ ପାଇଁ ମୁଖ୍ୟ ସାଧନ। ଏହାର ଅଭାବ ହିଁ ଆଜିର ସାମାଜିକ, ରାଜନୈତିକ ଓ ଆର୍ଥିକ ସଙ୍କଟର କାରଣ।

ଯେଉଁମାନେ ସ୍ୱାଧୀନତା ପରର ପଚିଶ-ତିରିଶ ବର୍ଷର ଶାସନକୁ ଦେଖିଥିବେ, ସେମାନେ ଦେଖିଥିବେ ଯେ ଏହି ଦୁଇଟି ସାଧନର କ୍ରମ ଅବକ୍ଷୟ ସହିତ ଭାରତର ବା ରାଜ୍ୟର ବିବିଧ ସଙ୍କଟର ଘନିଷ୍ଠ ସମ୍ପର୍କ ରହିଛି। ଏହି ଦୁଇର ସମନ୍ୱୟ ମହତାବବାବୁଙ୍କ ଜୀବନରେ ଓ ରାଜନୀତିରେ ସ୍ପଷ୍ଟ ଭାବରେ ପ୍ରତିଭାତ ହୋଇଥିଲା। ସେଥିପାଇଁ ଉଚ୍ଚକୋଟୀର ପ୍ରଶାସକ ହିସାବରେ ସେ ପରିଗଣିତ ହୋଇଥିଲେ।

ମହତାବବାବୁ ମୁଖ୍ୟମନ୍ତ୍ରୀ ଥିଲାବେଳେ ଏ ଲେଖକ କିଛି ବର୍ଷ ଧରି ପଞ୍ଚଦଶକରେ ବିଧାନସଭାର ସଭ୍ୟ ମଧ୍ୟ ଥିଲା। ସେମାନେ ପରସ୍ପରର ବିରୋଧ ପକ୍ଷରେ ରହିଥିଲେ। ସ୍ୱଭାବତଃ ଉଭୟଙ୍କର ବିରୋଧାତ୍ମକ ଭୂମିକା ଥିଲା। କିନ୍ତୁ ମହତାବବାବୁଙ୍କ ପ୍ରଶାସନିକ ଦକ୍ଷତା ବିଷୟରେ କାହା ମନରେ ଟିକିଏ ହେଲେ ସନ୍ଦେହ ନ ଥିଲା। ସାରା ରାଜ୍ୟର ବିଭିନ୍ନ ସମସ୍ୟା ବିଷୟରେ ତାଙ୍କର ପ୍ରକୃଷ୍ଟ ଜ୍ଞାନ ଥିଲେ ହେଁ ତାହାକୁ ପରିମାର୍ଜିତ କରିବାକୁ ସେ ବରାବର ଉଦ୍ୟମ କରୁଥିଲେ। ବିରୋଧୀ ପକ୍ଷର ଲୋକଙ୍କୁ ଡକାଇ ପରାମର୍ଶ ନେଉଥିଲେ ଓ ସେ ଅନୁସାରେ ନିଜର ମତକୁ ପରିବର୍ତ୍ତନ ଓ ସଂଶୋଧନ କରୁଥିଲେ। ବାହାରେ ସମସ୍ତେ ଜାଣନ୍ତି ଯେ ମହତାବବାବୁ ତାଙ୍କ ମତରେ ଅଟଳ, ବିରୋଧ ମତ ସହିତ ସାଲିସ୍ କରିବା ତାଙ୍କର ରକ୍ତରେ ନାହିଁ। କିନ୍ତୁ ଯେଉଁମାନେ ତାଙ୍କ ସହିତ ଯେଉଁଭାବରେ ହେଉ କାମ କରିଛନ୍ତି, ସେମାନେ ଜାଣନ୍ତି ଯେ ସେ ତାଙ୍କ ମତ ଠିକ୍ କରିବା ପୂର୍ବରୁ କେତେ ପରାମର୍ଶ କରନ୍ତି ଏବଂ ତାହା କାର୍ଯ୍ୟକାରୀ କରିବା ପରେ ମଧ୍ୟ ମନଖୋଲା ରଖିଥାନ୍ତି।

ଏହା ସହିତ ତାଙ୍କର ବଡ଼ ଗୁଣ ଥିଲା କାମର ଭିଡ଼ ମଧ୍ୟରେ

ସେ ଅଧ୍ୟୟନ କରିବାକୁ ଭୁଲୁ ନଥିଲେ। ତାଙ୍କର ଆବଶ୍ୟକୀୟ ସମସ୍ୟା ସମ୍ପର୍କରେ ଅଧ୍ୟୟନ କରିବା ଏବଂ ଅନେକ ସମୟରେ ତାଙ୍କ ମତ ଦ୍ୱାରା ଲୋକମତକୁ ପ୍ରଭାବିତ କରିବାକୁ ଲେଖିବା- ଏହି ଦୁଇଟି ଅଭ୍ୟାସ ସେ ରଖିଥିଲେ। ଶାସନ ସହିତ ସମ୍ପର୍କ ନ ଥିବା ବିଷୟରେ ମଧ୍ୟ ସେ ସାଧାରଣଜ୍ଞାନର ଅଧିକାରୀ ହେଉଥିଲେ। ଅନେକ ସମୟରେ ରାଜନୈତିକ ବ୍ୟକ୍ତିଙ୍କ ବିରୋଧରେ ଅଭିଯୋଗ କରାଯାଏ ଯେ, ସେମାନେ ସାହିତ୍ୟ, କ୍ରୀଡ଼ା, କଳା ପ୍ରଭୃତି ବିଷୟରେ ଅଜ୍ଞ। କିନ୍ତୁ ଦେଖାଯାଇଛି ଯେ ୧୯୪୬ ମସିହାରେ ଓଡ଼ିଶାର ଶାସନଭାର ଗ୍ରହଣ କଲାପରେ ସେ ସବୁକ୍ଷେତ୍ରରେ ତାଙ୍କର ପଟୁତା ଦର୍ଶାଇଛନ୍ତି ଓ ନେତୃତ୍ୱ ନେଇଛନ୍ତି। ପ୍ରତ୍ୟେକ କ୍ଷେତ୍ରରେ ପାରଦର୍ଶିତା ଲାଭ କରିଥିବା ବହୁ ଲୋକ ସେତେବେଳେ ଥିଲେ ହେଁ, ସେସବୁ କ୍ଷେତ୍ରରେ ପ୍ରବେଶ କରିବା ବା ପାରଦର୍ଶିତା ଲାଭ କରିବା ପାଇଁ ମହତାବ ବାବୁ ଯେତେ ପ୍ରେରଣା ଦେଇଛନ୍ତି ତାହା ଅତୁଳନୀୟ।

ବହୁଧା ବ୍ୟକ୍ତିତ୍ୱ, ବହୁଧା ପ୍ରତିଭାର ସେ ଥିଲେ ଗନ୍ତାଘର। ତାଙ୍କର ସ୍ମୃତି ବହୁଦିନ ଧରି ଉଜ୍ଜୀବିତ ହୋଇ ରହିବ ଓ ପ୍ରେରଣା ଦେବ।

୧୪, ଅଶୋକନଗର
ଭୁବନେଶ୍ୱର-୯

# ସ୍ଥିତପ୍ରଜ୍ଞ ବ୍ୟକ୍ତିତ୍ୱ

## ରମାକାନ୍ତ ରଥ

ଛାତ୍ରାବସ୍ଥାରୁ ଡକ୍ଟର ମହତାବଙ୍କ ସହିତ ପରିଚିତ ହେବାର ସୌଭାଗ୍ୟ ମୋତେ ମିଳିଥିଲା। ଏମ୍.ଏ. ପଢ଼ିବା ଆଗରୁ ମୁଁ ରବିବାର 'ପ୍ରଜାତନ୍ତ୍ର'ରେ କେତୋଟି କବିତା ଲେଖିଥିଲି ଏବଂ ଏମ୍.ଏ. ପଢ଼ିବା ବେଳେ 'ଝଙ୍କାର'ରେ ଲେଖିବା ଆରମ୍ଭ କରିଥିଲି। ଗୋଟିଏ ଦୁଇଟି କବିତା ପ୍ରକାଶିତ ହେବା ପରେ ମୋର କବିତା ସମ୍ପର୍କରେ ସେ ଆଗ୍ରହ ପ୍ରକାଶ କରି କେତେଜଣ ପ୍ରତିଷ୍ଠିତ ଲେଖକଙ୍କୁ ମୋ ବିଷୟରେ ପଚାରିଥିଲେ। ସେମାନଙ୍କଠାରୁ ଡକ୍ଟର ମହତାବଙ୍କର ଅନୁକୂଳ ମନ୍ତବ୍ୟ ଶୁଣି ମୁଁ ଉତ୍ସାହିତ ହୋଇଥିଲି। ବିଷୁବ ମିଳନ ପରି ଏକ ଅଭୂତପୂର୍ବ ସାହିତ୍ୟିକ ସମାବେଶର ଆୟୋଜନ କରି ସେ ସାହିତ୍ୟିକମାନଙ୍କୁ ପରସ୍ପର ସହିତ ପରିଚିତ ହେବାର ଓ ପରସ୍ପର ଦ୍ୱାରା ଉଦ୍‌ବୁଦ୍ଧ ହେବାର ସୁଯୋଗ ଦେଇଥିଲେ। 'ରବିବାର ପ୍ରଜାତନ୍ତ୍ର' ଓ 'ଝଙ୍କାର' ବ୍ୟତିରେକେ ଅନେକ ସାହିତ୍ୟିକ ସାହିତ୍ୟ ସାଧନାରୁ ନିବୃତ୍ତ ହୋଇଥାନ୍ତେ। ଓଡ଼ିଆ ସାହିତ୍ୟର ବିକାଶ ପାଇଁ ତାଙ୍କର ଉଦ୍ୟମ ପରି ଦୂରଦର୍ଶୀ ଓ ସାର୍ଥକ ଉଦ୍ୟମ ଆଉ କେହି କରିଥିବା ମୁଁ ଜାଣିନାହିଁ।

ଚାକିରୀରେ ଯୋଗଦାନ କଲାପରେ ମୁଁ ଅନେକ ଥର ତାଙ୍କ ସଂସ୍ପର୍ଶରେ ଆସିଛି। ବିଶେଷତଃ ସେ କ୍ଷମତାରେ ନ ଥିବା ସମୟରେ ଏବଂ ପ୍ରତ୍ୟେକ ଥର ତାଙ୍କର ଅସାଧାରଣ ପ୍ରଜ୍ଞା, ଦୂରଦର୍ଶିତା ଓ ଅବିଚଳିତ ମନୋଭାବର ପରିଚୟ ପାଇଛି। ଯେକୌଣସି ଛୋଟ ଘଟଣାକୁ ଏକ ବୃହତ୍ତର, ଐତିହାସିକ ଓ ତାତ୍ତ୍ୱିକ ପରିପ୍ରେକ୍ଷୀରେ ଦର୍ଶାଇବାରେ ତାଙ୍କର ପଟୁତା ମୁଁ ଅନ୍ୟତ୍ର ଦେଖିନାହିଁ। ତା'ପରେ ମନେହୁଏ ଯେ ଘଟଣାଟି ଅତି ସରଳ ଏବଂ ଏ ପର୍ଯ୍ୟନ୍ତ ତାକୁ ଆମେ ଠିକ୍ ଭାବରେ ବୁଝି ନଥିଲୁ। ନକ୍ସଲପନ୍ଥୀ ଆନ୍ଦୋଳନ ହେଉ ବା କୌଣସି ଶାସନଗତ ପ୍ରଶ୍ନ ହେଉ, ବା ଓଡ଼ିଶୀ ବୈଷ୍ଣବ ଧର୍ମ ହେଉ, ପ୍ରତ୍ୟେକ ବିଷୟରେ ଏକ ଅଭିନବ, ନିର୍ଦ୍ଦିଷ୍ଟ ଓ ଅତ୍ୟନ୍ତ, ଯୁକ୍ତିଯୁକ୍ତ ଦୃଷ୍ଟିଭଙ୍ଗୀ ସେ ଅନାୟାସରେ କରିପାରୁଥିଲେ। ଉଦାହରଣ ସ୍ୱରୂପ, ଥରେ ତତ୍କାଳୀନ

ଶିକ୍ଷାମନ୍ତ୍ରୀ ସ୍ୱର୍ଗତ ବନମାଳୀ ପଟ୍ଟନାୟକଙ୍କ ବାସ ଭବନରେ ଏକ ଆଲୋଚନା ପ୍ରସଙ୍ଗରେ ମୁଁ power politics ବା କ୍ଷମତାକାଂକ୍ଷୀ ରାଜନୀତି ବିରୁଦ୍ଧରେ କିଛି କଟୁ ମନ୍ତବ୍ୟ ପ୍ରକାଶ କରିଥିଲି। ଡକ୍ଟର ମହତାବ କହିଲେ, "ଶୁଣ ରମାକାନ୍ତ, There is no politics other than power politics. What is politics? It is the business of either getting into power, or continuing in power or dislodging someone from power". ମନ୍ତବ୍ୟଟି କେତେ ସରଳ ଏବଂ କେତେ ସତ୍ୟ !

୧୯୬୧ ମସିହାରେ ଯେଉଁଦିନ ତାଙ୍କ ସରକାର ଭାଙ୍ଗିଲା, ସେଦିନ ସନ୍ଧ୍ୟାବେଳେ ସେ ପୁରୀ ଆସିଥିଲେ। ଅନ୍ୟ ଏକ କାର୍ଯ୍ୟ ଉପଲକ୍ଷେ ମୁଁ ମଧ୍ୟ ପୁରୀରେ ଥିଲି। ତାଙ୍କର ପୁରୀ ଆସିବା କାର୍ଯ୍ୟକ୍ରମ ଆଗରୁ ସ୍ଥିର ହୋଇଥିଲେ ମଧ୍ୟ ସେଦିନ ଘଟିଥିବା ପରିସ୍ଥିତି ଦୃଷ୍ଟିରୁ ସେ ଆସିବେ ନାହିଁ ବୋଲି ଆମେ ପ୍ରାୟ ଧରି ନେଇଥିଲୁ। ନିର୍ଦ୍ଧାରିତ ସମୟରେ କିନ୍ତୁ ସେ ସେଠାରେ ପହଞ୍ଚିଲେ ଏବଂ ଅନତିବିଳମ୍ବେ ଜଗନ୍ନାଥ ଧର୍ମ ଉପରେ ଆଲୋଚନା ଆରମ୍ଭ କରିଦେଲେ, ସତେଯେପରି ସରକାର ଭାଙ୍ଗିଯିବା ବହୁଦିନ ତଳର ଏକ ମାମୁଲି ଘଟଣା। ସ୍ଥିତପ୍ରଜ୍ଞ ଭଳି ଗୋଟିଏ ଭୂମିକାରୁ ଭୂମିକାନ୍ତରେ, ଅନାୟାସରେ ଏବଂ ବାରମ୍ବାର ଅବତରଣ କରିବାରେ ତାଙ୍କର ପାରଙ୍ଗମତାର ପଟାନ୍ତର ନାହିଁ।

ଅନେକ ଘଟଣା ସ୍ମୃତିରେ ଅଛି, କିନ୍ତୁ ତାଙ୍କର ବ୍ୟକ୍ତିତ୍ୱର ବିଶାଳତା ଓ ବ୍ୟାପକତା ତ ସଂଶୟମୁକ୍ତ ନୁହେଁ ଯେ ଉଦାହରଣ ଦେବା ପ୍ରୟୋଜନ ହେବ। ମୋର ସାହିତ୍ୟିକ ଜୀବନ ଆରମ୍ଭରେ ମୋତେ ଉତ୍ସାହ ଦେଇଥିବା ଏବଂ ପରେ ଅନେକ ଶିକ୍ଷଣୀୟ ପରାମର୍ଶ ଦେଇଥିବା ବ୍ୟକ୍ତି ଆଜି ଆଉ ନାହାନ୍ତି। ମୋ ପରି ଅସଂଖ୍ୟ ଲୋକ ବଞ୍ଚିଥିବା ଯାଏଁ ତାଙ୍କୁ କୃତଜ୍ଞତାର ସହିତ ସ୍ମରଣ କରୁଥିବେ।

(୧୯୮୭ ଜାନୀୟାରୀ ୧୩ ତାରିଖର ପ୍ରଜାତନ୍ତ୍ର ସାପ୍ତାହିକୀ ଆନୁକୂଲ୍ୟରୁ)

ପୂର୍ବତନ ମୁଖ୍ୟ ଶାସନ ସଚିବ
ଓଡ଼ିଶା ସରକାର, ଭୁବନେଶ୍ୱର

# ମହତାବଜୀଙ୍କ ସ୍ମୃତି : କଥା ନୁହେଁ କାମ

## କାହ୍ନୁଚରଣ ଲେଙ୍କା

ଉତ୍କଳକେଶରୀ ଡକ୍ଟର ମହତାବଙ୍କ ଜୀବନୀ, କର୍ମ ସାଧନା ଓ କ୍ରାନ୍ତିକାରୀ ନେତୃତ୍ୱ ଭାରତର ଇତିହାସରେ ଅମଳିନ ଅକ୍ଷରରେ ଲିପିବଦ୍ଧ ହୋଇ ରହିବ। ସେ ଓଡ଼ିଶାରେ ଜନ୍ମ ନ ହୋଇ ଅନ୍ୟ କେଉଁଠି ଜନ୍ମ ହୋଇଥିଲେ ଭାରତକେଶରୀ ଭାବେ ଆମ ଜାତୀୟ ଜୀବନରେ ଚିହ୍ନିତ ହୋଇଥାନ୍ତେ। ମହତାବଜୀ ଓଡ଼ିଆ ଜାତିର ସ୍ୱାଭିମାନ ଓ ସ୍ୱାଧୀନ ମନୋବୃତ୍ତିର ପ୍ରତୀକ ପୁରୁଷ ବୋଲି କୁହାଯାଇ ପାରେ। ଓଡ଼ିଶାର ବ୍ୟକ୍ତି ଜୀବନ, ସମାଜ ଜୀବନ, ରାଜନୀତି, ସାହିତ୍ୟ, ସଂସ୍କୃତି ଓ ନିର୍ଭୀକ ମତବାଦର ସମର୍ଥ ପୁରୁଷ ଭାବରେ ଏ ଜାତିକୁ ବହୁଧା ଉଦ୍‌ବୁଦ୍ଧ, ଜାଗ୍ରତ ଓ ଉନ୍ମେଷିତ କରିଯାଇଛନ୍ତି। ମହତାବଜୀଙ୍କୁ ଛାଡ଼ି ଓଡ଼ିଶାର ଅର୍ଦ୍ଧ ଶତାବ୍ଦୀର ଇତିହାସ ଲେଖାଯାଇ ନପାରେ। ସେହି ତ୍ୟାଗବୀର, କର୍ମବୀର, ରାଷ୍ଟ୍ରବୀରଙ୍କ ପାଇଁ ଏ ଜାତି କେବଳ କାନ୍ଦିଲେ ଚଳିବ ନାହିଁ। ତାଙ୍କର କରଣୀ ଓ ସରଣୀ ଆମ ଜୀବନର ପାଥେୟ ଓ ଦିଗଦର୍ଶକ ହେଲେ ତାଙ୍କର ଅମର ଆତ୍ମା ସାନ୍ତ୍ୱନା ପାଇବ ବୋଲି ମୋର ମନେହୁଏ। ସ୍ୱାଧୀନୋତ୍ତର ଭାରତରେ ବୃହତ୍ତର ଉତ୍କଳର ଜନ୍ମଦାତା ଭାବରେ ଡକ୍ଟର ମହତାବ ଏ ଜାତିର ଚିର ନମସ୍ୟ ପୁରୁଷ ହୋଇଥିଲେ ହେଁ, ତାଙ୍କର ଅମ୍ଳାନ ସ୍ମୃତିରକ୍ଷା ଦିଗରେ ଆମେ କିଛି କରି ପାରିନାହୁଁ। ଏହାହିଁ ଦୁଃଖ ଓ କ୍ଷୋଭର ବିଷୟ। ତାଙ୍କର ଜୟନ୍ତୀ ଅବକାଶରେ ମୁଁ ଏ ଜାତି ସମକ୍ଷରେ କେତୋଟି ପ୍ରସ୍ତାବ ଉପସ୍ଥାପିତ କରୁଛି ଏବଂ ଆଶା କରୁଛି ସରକାର ଏବଂ ଜନସାଧାରଣ ଏ ଦିଗରେ ଏକନିଷ୍ଠ ପଦକ୍ଷେପ ନେବେ।

(୧) ଓଡ଼ିଶା ବିଧାନସଭା ଓ ସେକ୍ରେଟେରିଏଟ୍ ସମ୍ମୁଖରେ ଡକ୍ଟର ମହତାବଙ୍କର ପ୍ରତିମୂର୍ତ୍ତି ସ୍ଥାପିତ ହେଉ ଏବଂ ସେକ୍ରେଟେରିଏଟ୍ ସମ୍ମୁଖସ୍ଥ ରାଜପଥକୁ ମହତାବ ସରଣୀ ନାମରେ ନାମିତ କରାଯାଉ। ଏହା ସାଙ୍ଗକୁ କେନ୍ଦ୍ର

ରାଜଧାନୀ ଦିଲ୍ଲୀର ଏକ ରାଜପଥକୁ ମହତାବ ମାର୍ଗ ନାମରେ ଅଭିହିତ କରାଯାଉ।

(୨) ଯେଉଁ ମହତାବଜୀ ହୀରାକୁଦ ବନ୍ଧର ପ୍ରତିଷ୍ଠାତା ଥିଲେ ଓ ଓଡ଼ିଶାକୁ ଶସ୍ୟ ଶ୍ୟାମଳା କରିବା ପାଇଁ ସଂକଳ୍ପ ନେଇଥିଲେ, ସେହି ହୀରାକୁଦ ଅଞ୍ଚଳକୁ ମହତାବ ନଗରୀ ନାମରେ ନାମିତ କରାଯାଉ।

(୩) ଡକ୍ଟର ମହତାବଜୀଙ୍କୁ ମରଣୋତ୍ତର ଭାରତରତ୍ନ ଉପାଧି ପ୍ରଦାନ କ୍ଷେତ୍ରରେ କୌଣସି ମାରପେଞ୍ଚ ନୀତି ଧରା ନ ଯାଇ ଏହି ଜାତୀୟ ବୀରଙ୍କୁ ତୁରନ୍ତ ଏହି ସମ୍ମାନରେ ଭୂଷିତ କରାଯାଉ।

(୪) ମହତାବଜୀଙ୍କ ଜୟନ୍ତୀକୁ ସରକାରୀ ଭାବେ ପାଳନ କରାଯାଉ। ପୂଜ୍ୟ ପୂଜାର ପ୍ରତିଷ୍ଠା ଧାରା ଅବ୍ୟାହତ ରଖାଯାଉ।

(୫) ଦିଲ୍ଲୀସ୍ଥିତ ଓଡ଼ିଶା ଭବନରେ ସରକାରଙ୍କ ପକ୍ଷରୁ ମହତାବଜୀଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରାଯାଉ।

(୬) ଓଡ଼ିଶାର ବିଚ୍ଛିନାଞ୍ଚଳର ସାଂସ୍କୃତିକ ବିକାଶ ଦିଗରେ ମହତାବଜୀ ପ୍ରାଣପାତ ଉଦ୍ୟମ କରିଥିଲେ। ସେସବୁ ଅଞ୍ଚଳରେ ଓଡ଼ିଆଭାଷା-ସଂସ୍କୃତିର ପ୍ରଚାର, ବିକାଶ କାର୍ଯ୍ୟକ୍ରମ ତ୍ୱରାନ୍ୱିତ କରାଯାଉ ଓ 'ମହତାବ ବିକାଶ' ଯୋଜନା ନାମରେ ଏହାକୁ ଅଭିହିତ କରାଯାଉ। ଉପରୋକ୍ତ ପ୍ରସ୍ତାବଗୁଡ଼ିକର କାର୍ଯ୍ୟକରିତା କ୍ଷେତ୍ରରେ ଓଡ଼ିଶାର ଜନସାଧାରଣ ଓ ସରକାର ମିଳିତ ଭାବରେ କାର୍ଯ୍ୟ କଲେ ଏହି ଜାତୀୟ ବୀରଙ୍କ ଯଥାର୍ଥ ସ୍ମୃତିରକ୍ଷା ହୋଇପାରିବ। ଏହା ନିଶ୍ଚିତଯେ, ମହାତାବଜୀ ଆଜି ଅଶରୀରୀ ଭାବରେ ଆମ ଭିତରେ ବଞ୍ଚି ରହିଛନ୍ତି ଓ ଆମ୍ଭମାନଙ୍କୁ ଦିଗ୍‌ଦର୍ଶନ ଦେଇ ଚାଲିଛନ୍ତି। ମୋ'ମତରେ–

"ମହତାବଙ୍କର ନାହିଁଟି ବିଲୟ<br>
ଯେତେଦିନ ଥିବ ଓଡ଼ିଆ-ହୃଦୟ।"

ମହତାବଜୀ ଓଡ଼ିଆ ଜାତି ହୃଦୟରେ ଚିରଦିନ ବଞ୍ଚି ରହିବେ। ତାଙ୍କ ବାଣୀ ବୀଣାର ଝଙ୍କାର ଏ ଜାତିକୁ ପ୍ରତି ମୁହୂର୍ତ୍ତରେ ଝଙ୍କୃତ କରୁଥିବ।



# ପ୍ରାବନ୍ଧିକ ଡକ୍ଟର ମହତାବ

## ଅସିତ କବି

ଦେଶ ସେବା ହିଁ ଥିଲା ଡକ୍ଟର ହରେକୃଷ୍ଣ ମହତାବଙ୍କ ଜୀବନର ପୁଣ୍ୟ ବ୍ରତ। ତାଙ୍କ ସାମ୍ବାଦିକତା ଓ ସାହିତ୍ୟ ସେବା ମଧ୍ୟ ଏହି ଦେଶସେବାର ଅଙ୍ଗୀଭୂତ ଥିଲା। ତାଙ୍କ ବ୍ୟକ୍ତିତ୍ୱର ଦ୍ୟୁତି ଯେପରି ତାଙ୍କ ରାଜନୈତିକ ଜୀବନରେ ପ୍ରତିଫଳିତ ହୋଇଥିଲା, ତାଙ୍କ ପ୍ରତିଭାର ସୁରଭି ଅନୁରୂପ ଭାବରେ ତାଙ୍କର ସାରସ୍ୱତ ସୃଷ୍ଟିରେ ବିଚ୍ଛୁରିତ ହୋଇଥିଲା। 'ଚାରିଚକ୍ଷୁ'ର କବି, 'ଯୁଗ ସଙ୍କେତ'ର ନାଟ୍ୟକାର ଏବଂ 'ପ୍ରତିଭା', 'ଅବ୍ୟାପାର', 'ଟାଉଟର', '୧୯୭୫' ଓ 'ତୃତୀୟପର୍ବ'ର ଔପନାସିକଙ୍କ ଭିତରେ ଆଉ ଏକ ବିଶିଷ୍ଟ ଭାବସତ୍ତା ଆବେଗକମ୍ପିତ ହୋଇଥିଲା। ସେ ଭାବସତ୍ତା ପ୍ରାବନ୍ଧିକର। ଚଳିତ ଶତାବ୍ଦୀର ଅନ୍ୟତମ ବିଶିଷ୍ଟ ଚିନ୍ତାନାୟକ, ଜାତୀୟ ଜୀବନର ପ୍ରମୁଖ ପ୍ରବକ୍ତା ଡକ୍ଟର ମହତାବଙ୍କ ପ୍ରବନ୍ଧରେ କେତେବେଳେ ଏ ଦେଶର ରାଜନୈତିକ ଜୀବନର ବିବିଧ ସମସ୍ୟା, କେତେବେଳେ ସାମାଜିକ ଓ ସାଂସ୍କୃତିକ ମୂଲ୍ୟବୋଧ, କେତେବେଳେ ବା ଅର୍ଥନୈତିକ ଜୀବନର ବିବିଧ ଦିଗ୍‌ବଳୟ ନିଷପଟ ଭାବରେ ରୂପ ପାଇଛି। କେବଳ ସମସ୍ୟାର ଉତ୍‌ଥାପନ ଓ ତାର ବିଶ୍ଳେଷଣରେ ସେ ତୃପ୍ତ ନ ଥିଲେ; ଅଧିକନ୍ତୁ ସମସ୍ୟାର ସମାଧାନ ପାଇଁ ମଧ୍ୟ ସେ ଦେଇଛନ୍ତି ସୁଚିନ୍ତିତ ଦିଗଦର୍ଶନ। ତାଙ୍କ ପ୍ରବନ୍ଧରେ ପ୍ରତିଫଳିତ ଚିନ୍ତାଧାରା ପାରମ୍ପରିକ ଭାବଚେତନାର ପ୍ରତିଧ୍ୱନି ନୁହେଁ କିମ୍ବା ଅନ୍ୟର ଚିନ୍ତା ଓ ଚେତନାର ବିକଳ ପ୍ରତିବିମ୍ବ ନୁହେଁ। ତାଙ୍କର ଚିନ୍ତାଧାରାରେ ଆମେ ଅନୁଭବ କରୁ ମୌଳିକ ବିଚାରଧାରାର ମଙ୍ଗଳ ସ୍ପର୍ଶ।

ଡକ୍ଟର ମହତାବ ଜାଣିଥିଲେ ଯେ, ଜନଚିତ୍ତକୁ ପ୍ରଭାବିତ କରିବାର ଶକ୍ତି ସାହିତ୍ୟର ଅସୀମ। ଗଭୀର ଅନୁଧ୍ୟାନ ଓ ଅନୁଶୀଳନ ଫଳରେ ଯେଉଁ ସତ୍ୟ ସେ ଆବିଷ୍କାର କରୁଥିଲେ, ତାକୁ ଦ୍ୱିଧାହୀନ ଭାବରେ ଅଭିବ୍ୟକ୍ତ କରିବାକୁ ତାଙ୍କର ଆନ୍ତରିକତା ଭୁଲି ହୁଏନା। ନିଜର ବିଚାରବୁଦ୍ଧି ପ୍ରୟାଗ ନ କରି କୌଣସି କିଛିକୁ ସେ ଗ୍ରହଣ କରିବାକୁ ସତତ କୁଣ୍ଠିତ ଥିଲେ। ଏଥିପାଇଁ ଯେଉଁ ମାନସିକ ଦୃଢ଼ତା ଲୋଡ଼ା, ତାହା ଛାତ୍ର ଜୀବନରୁ ତାଙ୍କ

ଚିତ୍ତରେ ଉନ୍ମେଷ ଲାଭ କରିଥିଲା । ତାଙ୍କରି ଭାଷାରେ... "ସାଧାରଣଙ୍କ ମତ ଅନୁସାରେ ଚଳିବା ଏକପ୍ରକାର ଦୁର୍ବଳତା, ନିଜେ ଯାହା ଠିକ୍ ଭାବିବ, ତଦନୁସାରେ ସାଧାରଣଙ୍କ ମତ ଗଠନ କରିବା ହିଁ ହେଉଛି ସାମର୍ଥ୍ୟ– ଏହା ଆମର ସିଦ୍ଧାନ୍ତ ଥିଲା ଏବଂ ଏହି ଅନୁସାରେ ଆମେ ମଧ୍ୟ ଚଳୁଥିଲୁଁ । ନିଜକୁ ବୀର କରିବା ପାଇଁ, ଅର୍ଥାତ୍ ସାଧାରଣଙ୍କ ମତକୁ ଭୟ ନକରି ନିଜ ମତରେ ସାହସ ସହକାରେ ଚଳିବାର ଅଭ୍ୟାସ କରିବା ପାଇଁ ନାନା ପ୍ରକାର ପନ୍ଥା ଆମେ ଅବଲମ୍ବନ କରିଥିଲୁ ।(୧)

ଅସହଯୋଗ ଆନ୍ଦୋଳନର ଏହି ବିଶିଷ୍ଟ ନେତାଙ୍କ ଉପରେ ଗାନ୍ଧିଜୀଙ୍କ ପ୍ରଭାବ ଅସୀମ ଥିଲା । ଗାନ୍ଧିଜୀଙ୍କ ନୀତି, ଆଦର୍ଶ, ଦୃଷ୍ଟିଭଙ୍ଗୀ ଓ ଦର୍ଶନରେ ସେ ଉଦ୍‌ବୁଦ୍ଧ ହୋଇଥିଲେ । ଗାନ୍ଧିଜୀଙ୍କ ଚିନ୍ତାଧାରା ଓ ଜୀବନ-ଦର୍ଶନକୁ କେନ୍ଦ୍ରକରି ସେ ବହୁ ପ୍ରବନ୍ଧ ଲେଖିଛନ୍ତି । ତାଙ୍କ ଗାନ୍ଧୀଧର୍ମ (୨), ଅହିଂସାର ଉପଯୋଗ(୩), ଗାନ୍ଧୀ ନୀତି ଓ ବିନୋବା ନୀତି(୪) ପ୍ରବନ୍ଧ ଏହାର ପ୍ରମାଣ । 'ଗାନ୍ଧୀଧର୍ମ' ପ୍ରବନ୍ଧରେ ଡକ୍ଟର ମହତାବ ଲେଖିଛନ୍ତି... "ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଅହିଂସା ଆଚରିତ ଅବସ୍ଥାକୁ ଆସିବା ଉଚିତ୍ । ବିଶେଷତଃ ଏହି ସୂତ୍ରରେ ଭାରତୀୟ ସମାଜ ପୁନର୍ଗଠିତ ହେବା ଉଚିତ । ସେ ସମାଜରେ ଧର୍ମ, ଜାତି ବା ଗୋଷ୍ଠୀ ଘେନି ବୈଷମ୍ୟ ରହିବ ନାହିଁ । ଶତଧା ବିଭକ୍ତ ଭାରତୀୟ ସମାଜରେ ଗୋଟିଏ ତାନରେ ଝଙ୍କାର ଉଠିବ । ତା'ହେଲେ ଯାଇଁ ଭାରତ ପୃଥିବୀର ପଥପ୍ରଦର୍ଶକ ହେବ । ଅହିଂସାର ଉପଯୋଗ" ଶୀର୍ଷକ ପ୍ରବନ୍ଧରେ ସେ କହିଛନ୍ତି..... ସକ୍ରେଟିସ୍ ଯେପରି ସ୍ୱର୍ଗରୁ ମର୍ତ୍ତ୍ୟକୁ ଦର୍ଶନ ଆଣିଥିଲେ ବୋଲି କଥିତ ଅଛି, ଗାନ୍ଧିଜୀ ସେହିପରି ଅହିଂସାକୁ ସୂକ୍ଷ୍ମ ଦର୍ଶନରୁ ଆଣି ବ୍ୟାବହାରିକ ଜୀବନରେ ପହଞ୍ଚାଇଛନ୍ତି । ବ୍ୟାବହାରିକ ଜୀବନ ପାଇଁ ଅହିଂସାର ସୀମା ନିର୍ଦ୍ଧାରଣ ହେଉଛି ଗାନ୍ଧିଜୀଙ୍କର ମନୁଷ୍ୟ ସମାଜକୁ ଶ୍ରେଷ୍ଠ ଅବଦାନ ।

---

(୧) ସାଧନର ପଥେ, ପୃଷ୍ଠା ୧୯ (୨) ଝଙ୍କାର, ୧/୨୦
(୩) ଝଙ୍କାର, ୨/୧ (୪) ଝଙ୍କାର, ୫/୬

ଦେଶର ସ୍ୱାଧୀନତା ପାଇଁ ଭାରତର ଯେଉଁ ଉତ୍ସର୍ଗୀକୃତ ବ୍ୟକ୍ତିମାନେ ସ୍ୱାଧୀନତା ପ୍ରାପ୍ତିପରେ ନୂତନ ଭାରତ ଗଠନର ମଧୁମୟ ସ୍ୱପ୍ନ ଦେଖିଥିଲେ, ସେମାନଙ୍କ ମଧ୍ୟରେ ଡକ୍ଟର ମହତାବ ଅନ୍ୟତମ। ସେ ଅନୁଭବ କରିଥିଲେ ଶତଧା ବିଭକ୍ତ ଭାରତୀୟ ସମାଜରେ ଐକ୍ୟ, ସଙ୍ଗତି ଓ ପାରସ୍ପରିକ ସଦ୍‌ଭାବ ପାଇଁ ଗାନ୍ଧିଜୀ ଯେଉଁ ଦିଗ୍‌ଦର୍ଶନ ଦେଇ ଯାଇଛନ୍ତି, ତଦନୁଯାୟୀ ବିହିତ କାର୍ଯ୍ୟାନୁଷ୍ଠାନରେ ହିଁ ନୂତନ ସମୃଦ୍ଧ ଓ ସୁନ୍ଦର ଭାରତ ଗଢ଼ାଯାଇ ପାରିବ। 'ଭାରତୀୟ ସଂସ୍କୃତି' (୫) ପ୍ରବନ୍ଧରେ ମଧ୍ୟ ଡକ୍ଟର ମହତାବ ଗାନ୍ଧିଜୀଙ୍କ ଚିନ୍ତାଧାରା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି। ତାଙ୍କ ଭାଷାରେ... "ଯୋଗଜନ୍ମା ଗାନ୍ଧିଜୀ ସମସ୍ତ ସଂସ୍କୃତିର ଚିନ୍ତାଧାରାକୁ ସମନ୍ୱୟ କରି ଯେଉଁ ନୂତନ ଚିନ୍ତାଧାରା ପ୍ରବର୍ତ୍ତନ କରାଇଛନ୍ତି ସେହି ହେଉଛି ବାସ୍ତବିକ ଭାରତୀୟ ସଂସ୍କୃତି। ସେହି ସଂସ୍କୃତିକୁ ଗାଢ଼ ଆଲିଙ୍ଗନ କଲେ ଭାରତର ମୁକ୍ତି ଓ ମଙ୍ଗଳ; ଅନ୍ୟଥା ସଂଘର୍ଷ ଓ ରାଷ୍ଟ୍ରଭଙ୍ଗ। ଗାନ୍ଧିଜୀଙ୍କଠାରେ ସବୁ ସଂସ୍କୃତିର ସମନ୍ୱୟ ଘଟିଥିବାରୁ ସମସ୍ତେ ତାଙ୍କୁ ନିଜର ମନେ କରୁଥିଲେ। ସେ ନିଜେ ଇଂରାଜି ଶିକ୍ଷିତ, କିନ୍ତୁ ସେ ଅନ୍ୟମାନଙ୍କ ସହିତ ତାଙ୍କର କାର୍ଯ୍ୟ। ନିଜେ ସବର୍ଣ୍ଣ, ତଥାପି ଅସବର୍ଣ୍ଣମାନଙ୍କ ପାଇଁ ଚିନ୍ତା। ନିଜେ ହିନ୍ଦୁ ତଥାପି ମୁସଲମାନମାନଙ୍କ ପାଇଁ ତାଙ୍କର ସମବେଦନା, ନିଜେ ଆର୍ଯ୍ୟ ତଥାପି ଅନାର୍ଯ୍ୟ ସେବା ପ୍ରତି ଧ୍ୟାନ। ଏହିପରି ସେ ନିଜ ଜୀବନରେ ସମସ୍ତ ଚିନ୍ତାଧାରାର ସମନ୍ୱୟ ଘଟାଇଥିଲେ। ସେହି ସମନ୍ୱୟକୁ ଭାରତୀୟ ସଂସ୍କୃତି ବୋଲି ଗ୍ରହଣ କରିନେବାକୁ ହେବ। ସେଥିରେ ସମସ୍ତ ସଂସ୍କୃତିର କିଛି କିଛି ସଂସ୍କାର ଅଛି, ହିନ୍ଦୁ ଧର୍ମ-ମାତ୍ର ଜାତିଭେଦ ନାହିଁ। ଅନାର୍ଯ୍ୟର ସରଳ ସ୍ୱଚ୍ଛଳ-ଜୀବନ- ମାତ୍ର ପରିମାର୍ଜିତ ଧର୍ମବିଶ୍ୱାସ, ଇଂରାଜୀ ଶିକ୍ଷିତମାନଙ୍କୁ ଗ୍ରାମବାସୀମାନଙ୍କ ସହିତ ଏକ ହେବା ପାଇଁ ଆହ୍ୱାନ। ଏହିପରି ପ୍ରତ୍ୟେକର ପାଇଁ କିଛି କିଛି ସଂସ୍କାର ସେଥିରେ ଅଛି।"

ଭାରତର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ସମସ୍ୟାର ସମାଧାନ ପାଇଁ ଡକ୍ଟର ମହତାବ ତାଙ୍କ ପ୍ରବନ୍ଧରେ ଗାନ୍ଧିଜୀଙ୍କର ନୀତି ଅନୁସରଣ କରିବାକୁ ଆମକୁ ଉପଦେଶ ଦେଇ ଯାଇଛନ୍ତି। ସମାଜ ପ୍ରତି ଲେଖକଙ୍କର

---

(୫) ଝଙ୍କାର, ୨/୩

କର୍ତ୍ତବ୍ୟ ସମ୍ପର୍କରେ ସେ ସତତ ସଚେତନ ଥିଲେ। ତାଙ୍କ ପ୍ରବନ୍ଧ ସାହିତ୍ୟରେ ଏହି ସତ୍ୟ ଉପଲବ୍ଧ ହୋଇଥାଏ। ସେ ହିନ୍ଦୁର ସମାଜ ଓ ଜୀବନଧାରା ସମ୍ପର୍କରେ ଗଭୀର ଭାବରେ ଚିନ୍ତା କରିଥିଲେ। ହିନ୍ଦୁ ସମାଜକୁ ଆଧୁନିକ ଯୁଗରେ ଗତିଶୀଳ କରିବା ପାଇଁ ବର୍ଣ୍ଣଭେଦକୁ କୁଳ-ସମ୍ପର୍କରୁ ବିଚ୍ଛିନ୍ନ କରିବାକୁ ସେ ପରାମର୍ଶ ଦେଇଛନ୍ତି। ତାଙ୍କ ମତରେ ଏହାଫଳରେ "ବର୍ଣ୍ଣ ବର୍ଣ୍ଣ" ମଧ୍ୟରେ ପ୍ରାଚୀର ରହିବ ନାହିଁ, କି ଧର୍ମ ଧର୍ମ ଭିତରେ ପ୍ରତିବନ୍ଧକ କିଛି ରହିବ ନାହିଁ। ଏହି ବ୍ୟାଖ୍ୟାନୁସାରେ ହିନ୍ଦୁ ଧର୍ମର କର୍ମସିଦ୍ଧାନ୍ତ ପୂର୍ବପରି ରହିବ, ମାତ୍ର ହିନ୍ଦୁ ସମାଜ ଆଧୁନିକ ଯୁଗରେ ଗତିଶୀଳ ହେବ।"

ମୌଳିକ ପ୍ରତିଭା ଅନ୍ୟର ପ୍ରତିବିମ୍ବ ହେବାକୁ ଚାହେଁନା। ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ଡକ୍ଟର ମହତାବଙ୍କ ପ୍ରବନ୍ଧ ମୌଳିକ ବିଚାରଧାରାର ସ୍ୱାକ୍ଷର ବହନ କରିଛି। ଯୁଗ ଯୁଗର ବିଶ୍ୱାସରେ ସେ ଆତ୍ମବିସ୍ମୃତ ହୋଇ ନ ଥିଲେ। ସତ୍ୟର ଆବିଷ୍କାର ପାଇଁ ପ୍ରତ୍ୟେକ ବିଷୟର ଗଭୀର ଅନୁଧ୍ୟାନ ଓ ଅନୁଶୀଳନ ସଙ୍ଗେ ସଙ୍ଗେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀରେ ତା'ର ମୂଲ୍ୟାୟନ ତାଙ୍କର ଧ୍ୟେୟ। ତାଙ୍କର 'ଭାଗବତ ଓ ଜନତା' ପ୍ରବନ୍ଧ ଏହାର ପ୍ରମାଣ। ଏହି ପ୍ରବନ୍ଧରେ ସେ ଲେଖିଛନ୍ତି.... "କଳିଯୁଗକୁ ସତ୍ୟଯୁଗରେ ପରିଣତ କରିବ ଏଇ ମନୁଷ୍ୟ। ସେଥିପାଇଁ ଅଶ୍ୱାରୋହଣ କରି ଆସି କଳ୍କୀ ଅବତାରଙ୍କୁ କାହାରିକି ନାଶ କରିବାକୁ ହେବନାହିଁ। ଈଶ୍ୱରଙ୍କଠାରେ ବିଶ୍ୱାସ ରଖି କର୍ମ ନିରତ ରହିଲେ କଳି ମନେ ମନେ ଅପସରି ଯିବେ। ଦ୍ୱାଦଶ ସ୍କନ୍ଧରେ କଳି ସମ୍ବନ୍ଧୀୟ ଭବିଷ୍ୟତବାଣୀ ଜନସାଧାରଣଙ୍କ ମନରେ ଆତଙ୍କ ଓ ବର୍ତ୍ତମାନ ପ୍ରତି ଅବିଶ୍ୱାସ ସୃଷ୍ଟି କରିବାରେ ବହୁ ପରିମାଣରେ ଦାୟୀ। ପ୍ରଥମତଃ ମାୟାବାଦ ଲୋକଙ୍କୁ ଜୀବନ ପ୍ରତି ବୀତସ୍ପୃହ କରୁଛି। ଦ୍ୱିତୀୟରେ କଳିଯୁଗ ସମ୍ବନ୍ଧରେ ବର୍ଣ୍ଣନା— ଏଥିରେ ଜନସାଧାରଣଙ୍କ ସାହସ ଓ ଧୈର୍ଯ୍ୟର ଚ୍ୟୁତି ଘଟୁଛି। ଏ ଚ୍ୟୁତିକୁ କେବଳ ସଂକୀର୍ତ୍ତନ ପୂରଣ କରିପାରିବ ନାହିଁ। ଏହି ଦୃଷ୍ଟିରୁ ବ୍ୟକ୍ତି ଓ ସମାଜର କ୍ରମୋନ୍ନତି ପଥରେ ଶ୍ରୀମଦ୍ ଭାଗବତ ସହାୟକ ନୁହେଁ।" (୬) ଡକ୍ଟର ମହତାବଙ୍କ ଏହି ମତ ସମସ୍ତଙ୍କ ପକ୍ଷରେ ଗ୍ରହଣୀୟ ହେବ ତା' ନୁହେଁ; କିନ୍ତୁ ନିଜ ପ୍ରତୀତିକୁ ନିର୍ଭୀକ ଓ ସ୍ୱଚ୍ଛ ଭାବରେ ପ୍ରକାଶ କରିବାରେ

---

(୬) ଝଙ୍କାର, ୨୮/୧୧

ସେ ଯେଉଁ ସାହସିକତା ଓ ନିଷ୍ଠାର ପରିଚୟ ଦେଇଛନ୍ତି, ତାହା ହିଁ ଏଠାରେ ଲକ୍ଷ୍ୟ କରିବାର କଥା। 'ଗୀତା ଓ ଜନତା' (୭), 'ବର୍ଣ୍ଣାଶ୍ରମ ବା ଜାତିପ୍ରଥା' (୮), 'ଶ୍ରୀ ଅରବିନ୍ଦ ଓ ସ୍ୱାଧୀନତା' (୯), ପ୍ରବନ୍ଧରେ ବିଷୟ ବିଶ୍ଳେଷଣରେ ଚମତ୍କାରିତା ଉଲ୍ଲେଖଯୋଗ୍ୟ।

'ଗାଁ ମଜଲିସ' ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ବିଶେଷ ମର୍ଯ୍ୟାଦା ଦାବୀ କରେ। ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ଡକ୍ଟର ମହତାବ ଏହାରି ମାଧ୍ୟମରେ ଏକ ନୂତନଧାରା ପ୍ରବର୍ତ୍ତନ କଲେ। ସ୍ୱାଧୀନତା ପ୍ରାପ୍ତି ପରେ ଦେଶରେ ନିର୍ମାଣ ଯୁଗର ସୂତ୍ରପାତ। ଦୀର୍ଘ ପରାଧୀନତା ଭିତରେ ଦେଶ ଅନେକ କିଛି ହରାଇଛି। ତେଣୁ ଦେଶକୁ ନୂତନ କରି ଗଢ଼ିବାର ଅଭୀପ୍ସା ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ମନରେ ଉନ୍ମେଷ ଲାଭ କରିଛି। ପରିବର୍ତ୍ତିତ ପରିବେଶରେ ଡକ୍ଟର ମହତାବ ସଭ୍ୟତା ଓ ସଂସ୍କୃତିର ଅବକ୍ଷୟର ଚିତ୍ର ଦେଇ ସଂସ୍କାର ଲିପ୍ସାର ପରିଚୟ ଦେଇଛନ୍ତି। ଗାଁ ମଜଲିସରେ ଏ ଦେଶର ରାଜନୀତି, ସମାଜ, ସଂସ୍କୃତି ପ୍ରଭୃତି ବିଭିନ୍ନ ବିଷୟରେ ବିଭିନ୍ନ ସମୟରେ ସେ ଆଲୋଚନା କରିଛନ୍ତି। ଏ ଦେଶର ଗ୍ରାମାଞ୍ଚଳର ଜନସାଧାରଣଙ୍କୁ ଦେଶର ବିଭିନ୍ନ ସମସ୍ୟା ସହିତ ପରିଚିତ କରି ସେ ସବୁର ସମାଧାନ ସକାଶେ ସେ ସୁଚିନ୍ତିତ ଦିଗ୍‌ଦର୍ଶନ ମଧ୍ୟ ଦେଇଛନ୍ତି। ତାଙ୍କ 'ଗାଁ ମଜଲିସ' କେବଳ ଗ୍ରାମାଞ୍ଚଳର ଲୋକଙ୍କୁ ଆକୃଷ୍ଟ କରିନାହିଁ, ଅଧିକନ୍ତୁ ଦେଶର ସକଳ ସ୍ଥାନର ବୁଦ୍ଧିଜୀବୀ ସମ୍ପ୍ରଦାୟ ମଧ୍ୟ ଗଭୀର ଆଗ୍ରହ ସହକାରେ ଗାଁ ମଜଲିସ ପଢ଼ିଥାଆନ୍ତି। ଏଠାରେ ଉଲ୍ଲେଖଯୋଗ୍ୟ, ଡକ୍ଟର ମହତାବଙ୍କ ଏହି ଗାଁ ମଜଲିସ୍‌ରେ ଚିରନ୍ତନ ମୂଲ୍ୟବୋଧ ସମ୍ପନ୍ନ ଉନ୍ନତ ଚିନ୍ତାଶୀଳ ଆଲୋଚନା ମଧ୍ୟ ଦେଖିବାକୁ ମିଳେ। ଉଦାହରଣ ସ୍ୱରୂପ ତାଙ୍କର ନୈତିକତା ଓ ଆଧ୍ୟାତ୍ମିକତା ଶୀର୍ଷକ ଆଲୋଚନା। ଏଥିରେ ସେ ଲେଖିଛନ୍ତି... "ନୀତି ଓ ଆଧ୍ୟାତ୍ମିକ ମଧ୍ୟରେ ପ୍ରଭେଦ ଏହି ଯେ ସମାଜରେ ସଂଗଠନ ପାଇଁ ନୀତି ଆବଶ୍ୟକ, କିନ୍ତୁ ମନୁଷ୍ୟର ସ୍ୱଭାବ ପରିବର୍ତ୍ତନ ପାଇଁ ଆଧ୍ୟାତ୍ମିକତା ଆବଶ୍ୟକ। ଗାନ୍ଧିଜୀଙ୍କ ସମସ୍ତ କାର୍ଯ୍ୟକ୍ରମ

---

(୭) ଝଙ୍କାର, ୨୭/୧୦ (୮) ଝଙ୍କାର, ୭/୬

(୯) ଝଙ୍କାର, ୨୦/୫

ସାମାଜିକ। ଯେଉଁ ନୀତିରେ ବ୍ୟକ୍ତି ନିଜକୁ ନିଜେ ପରିଚାଳନା କଲେ ସୁସ୍ଥ ସମାଜ ଗଠନ କରିପାରିବ, ସେ ସେହି ନୀତିର ପ୍ରବର୍ତ୍ତନ କରିଥିଲେ। ଅବଶ୍ୟ ତାଙ୍କ ବିଚାରରେ ଭାରତୀୟ ସମାଜ ରହିଥିଲା। ଭାରତୀୟ ସମାଜରେ କି ସଂସ୍କାର ସାଧନ କଲେ ସେ ସମାଜ ପରାଧୀନତାର ସମ୍ମୁଖୀନ ହୋଇପାରିବ, ଏହା ହିଁ ଗାନ୍ଧିଜୀଙ୍କ ସମସ୍ତ କାର୍ଯ୍ୟକ୍ରମର ମୂଳ ଭିତ୍ତି। ଗାନ୍ଧିଜୀ ନିଜେ ଈଶ୍ୱରବିଶ୍ୱାସୀ ଥିଲେ ଏବଂ ତାଙ୍କ ଜୀବନର ଏକ ଅଙ୍ଗ ଥିଲା ପ୍ରାର୍ଥନା। କିନ୍ତୁ ସେ ଏହାକୁ ସାମାଜିକ ରାଜନୈତିକ କ୍ଷେତ୍ରରେ ବାଧ୍ୟତାମୂଳକ କରି ନଥିଲେ। ଏଥିରୁ ଅନୁମାନ କରାଯାଏ ଯେ, ସମାଜକୁ ନୂତନ ଭାବରେ ଗଠନ କରିବା ପାଇଁ ଆଧ୍ୟାତ୍ମିକ ସାଧନା ଯେ ଅନିବାର୍ଯ୍ୟ, ଏହା ସେ ମନେ କରି ନ ଥିଲେ। ବାସ୍ତବିକ ସମାଜ ଗଠନ ସହିତ ଆଧ୍ୟାତ୍ମିକ ସାଧନାର ପ୍ରତ୍ୟକ୍ଷ ସମ୍ପର୍କ ନାହିଁ। ଜଣେ ଈଶ୍ୱରବିଶ୍ୱାସୀ ନ ହୋଇ ମଧ୍ୟ ସୁସ୍ଥ ସମାଜର ବ୍ୟକ୍ତି ହୋଇପାରେ।''(୧୦)

ଡକ୍ଟର ମହତାବଙ୍କ ପ୍ରବନ୍ଧ ସାହିତ୍ୟର ରଚନାଶୈଳୀ ଅନୁଧ୍ୟାନ କାଳରେ ଉଲ୍ଲେଖଯୋଗ୍ୟ ଯେ... ''Literature is a social art & style is the echo, the revibration of the writers or speakers personality & its success is to be measured by the fullness of response it evokes in the reader or hearer (୧୧)'' ମୁଷ୍ଟିମେୟ ବୁଦ୍ଧିଜୀବୀଙ୍କ ପାଇଁ କେବଳ ଡକ୍ଟର ମହତାବ ପ୍ରବନ୍ଧ ଲେଖିନାହାନ୍ତି, ସେ ଲେଖିଛନ୍ତି ଆମରି ଏହି ସମାଜର ସକଳ ଶ୍ରେଣୀର ନରନାରୀଙ୍କ ପାଇଁ। ତେଣୁ ବୌଦ୍ଧିକତାର ତପ୍ତ ବାଲିଚର ଭିତରେ ତାଙ୍କ ଭାବଚେତନାର ସ୍ୱଚ୍ଛ ଓ ପବିତ୍ର ଧାରା ଲୁପ୍ତ ହୋଇ ନାହିଁ। କଠିନତତ୍ତ୍ୱରେ ତାଙ୍କ ପ୍ରବନ୍ଧ ପାଠକଲେ କ୍ଲାନ୍ତି ଆସେ ନାହିଁ। ପକ୍ଷାନ୍ତରରେ ସେଥିରେ ପ୍ରତିଫଳିତ ଭାବଚେତନା ଆମକୁ ଭାବାବିଷ୍ଟ କରିଥାଏ। ଆଳଙ୍କାରିକତାର ବନ୍ଧନରୁ ମୁକ୍ତ, ସରଳ, ସହଜ ଅଥଚ ସୁନ୍ଦର ଭାଷାରେ ନିଜ ଭାବର ଅଭିବ୍ୟକ୍ତି ପାଇଁ ସେ ସର୍ବଦା ଉଦ୍ୟମ କରିଛନ୍ତି।

ଅପର୍ଣ୍ଣାନଗର,<br>ଚାଉଳିଆଗଞ୍ଜ, କଟକ-୪



---

(୧୦) ପ୍ରଜାତନ୍ତ୍ର ୧୧।୮।୧୯୬୮

(୧୧) K.R. Srinibas Iyenger & Premananda Kumar: Introduction to the study of English Literature, Page-260

# ବତୀଘର

## ମାନସ ଦାସ

ନିବିଡ଼ ରାତ୍ରି। ନିର୍ଜନ ସମୁଦ୍ରର ନୀଳ ସବୁଜ ଜଳରାଶି ମଧ୍ୟରେ ମାସ୍ତୁଲବାହି ଜାହାଜକୁ ଆଲୋକର ସଙ୍କେତ ଦେଇ ପୋତାଶ୍ରୟ ଆଡ଼କୁ ବାଟ କଢ଼େଇ ଆଣେ ବତୀଘର। ହଜିଯାଉଥିବା ମୁହୂର୍ତ୍ତଟିଏ ଶୀତଳ ସମ୍ବେଦନାର ସ୍ପର୍ଶ ପାଇ ହୋଇଉଠେ ଜୀବନ୍ତ।

ଉତ୍କଳକେଶରୀ ଡଃ.ହରେକୃଷ୍ଣ ମହତାବ ବତୀଘରଟିଏ ପରି ଓଡ଼ିଶା ଇତିହାସ, ସାହିତ୍ୟ, ରାଜନୀତି ଏବଂ ସର୍ବୋପରି ଜନମାନସକୁ ଗଭୀରଭାବେ ପ୍ରଭାବିତ କରିଥିଲେ ଏବଂ ଏକ ନିର୍ଭୁଲ ଦିଗ୍‌ଦର୍ଶନ ଦେଇଥିଲେ।

ବୟସର ଯଥେଷ୍ଟ ଦୂରତ୍ୱ ଥିଲେ ମଧ୍ୟ ସେ କିପରି ଜଣେ ତରୁଣର ଚିନ୍ତାଧାରାକୁ ଆକ୍ରାନ୍ତ କରିଥିଲେ, ସେ ନେଇ ଏଇ କ୍ଷୁଦ୍ର ଉପାଖ୍ୟାନ।

ସମୟ—୧୯୭୧ ମସିହା। ସ୍ଥାନ—ସୁନ୍ଦରଗଡ଼ ମହାବିଦ୍ୟାଳୟ। ପରିବେଶ—ସୁନ୍ଦରଗଡ଼ ମହାବିଦ୍ୟାଳୟର ବାର୍ଷିକୋତ୍ସବ। ଡଃ. ମହତାବ ସେ ସମୟରେ ଶାସନ ରାଜନୀତି ସହ ସଂପୃକ୍ତ ନ ଥିଲେ। ବର୍ଷୀୟାନ ତେଜସ୍ୱୀ ପୁରୁଷ— ଜଣେ ବିଶିଷ୍ଟ ଐତିହାସିକ ଏବଂ ସାହିତ୍ୟିକ ଭାବେ ସେ ଉକ୍ତ ଉତ୍ସବର ପୁରୋଧା ହୋଇଥାନ୍ତି। ସଭାସ୍ଥଳ କେବଳ ଛାତ୍ର ଶିକ୍ଷକମାନଙ୍କ ଦ୍ୱାରା ନୁହେଁ, ବହୁ ଉତ୍ସୁକ ସାଧାରଣ ଜନତାଙ୍କ ଦ୍ୱାରା ଭରପୂର ଥାଏ। ଉତ୍ସବ ଯଥାରୀତି ଆରମ୍ଭ ହୋଇ ବିଭିନ୍ନ କାର୍ଯ୍ୟକ୍ରମ ଦେଇ ଆଗେଇ ଚାଲିଲା। ବହୁ ଆକାଂକ୍ଷିତ ଡଃ ମହତାବଙ୍କ ବକ୍ତୃତା ଆରମ୍ଭ ହେବାର ଅବ୍ୟବହିତ ପୂର୍ବରୁ ପୁରସ୍କାର ବିତରଣ କରାଇଲା। ଖେଳ କୁଦ; ବିଭିନ୍ନ ପ୍ରତିଯୋଗିତା, ସାହିତ୍ୟ ଏବଂ ଅନ୍ୟାନ୍ୟ ବିଭାଗକୁ ନେଇ କୃତୀ ପ୍ରତିଯୋଗୀମାନଙ୍କୁ ପୁରସ୍କାର ବଣ୍ଟନ କରୁଥିବା ସମୟରେ, ଡଃ. ମହତାବ ସେମାନଙ୍କ ସହ ପଦେ କଥା ହେଉଥିଲେ ଏବଂ କଲେଜର ପୁରସ୍କାର ସହ ନିଜେ କଟକରୁ ଆଣିଥିବା କିଛି ପୁସ୍ତକ ମଧ୍ୟ ଉପହାର ଦେଉଥିଲେ। ସେଇ ଅବସରରେ ଗଳ୍ପ,କବିତା, ଏକାଂକିକା— ଏ ସମସ୍ତ ବିଭାଗରେ ପୁରସ୍କୃତ ହୋଇ ବାରମ୍ବାର ମଞ୍ଚ ଉପରକୁ

ଆସୁଥିବା ତରୁଣଟି ସହ ଡଃ ମହତାବ ପ୍ରଥମେ କିଛି ଆଳାପ କରି ପୁରସ୍କାର ଦେଉଥିଲେ ଏବଂ ନିଜେ ଏକ ଯୁବକ ପରି ଉଲ୍ଲସିତ ହେଉଥିଲେ। ଶେଷରେ ସାହିତ୍ୟର ବିଭିନ୍ନ ପ୍ରତିଯୋଗିତାରେ ଶ୍ରେଷ୍ଠ ପ୍ରତିଯୋଗୀ ଭାବେ ବିବେଚିତ ହୋଇ ଯେତେବେଳେ ସେଇ ତରୁଣଟି "ଲିଟରାରୀ ଚମ୍ପିୟନ" ପୁରସ୍କାର ଗ୍ରହଣ କରିବାକୁ ମଞ୍ଚ ନିକଟକୁ ଆସିଲା, ଡଃ ମହତାବ ଆନନ୍ଦରେ ତରୁଣଟିକୁ ଆଲିଙ୍ଗନ କରି ତା' କୃତିତ୍ୱର ଉଚ୍ଛ୍ୱସିତ ପ୍ରଶଂସା କଲେ ଏବଂ ସଭା ପରେ ତାଙ୍କ ସହ ଆଳାପ କରିବାକୁ ନିମନ୍ତ୍ରଣ କଲେ।

ଉତ୍କଳକେଶରୀ ଡଃ ହରେକୃଷ୍ଣ ମହତାବଙ୍କ ଆତ୍ମୀୟତା ଏବଂ ସମ୍ବେଦନଶୀଳତା ସେଦିନ ସେ ଅଠର ବର୍ଷର ତରୁଣଟିକୁ ଗଭୀରଭାବରେ ପ୍ରଭାବିତ କରିଥିଲା।

ଡଃ ମହତାବ ତାଙ୍କ ଭାଷଣ ପ୍ରସଙ୍ଗରେ କହିଥିଲେ– "ମଣିଷର ମହନୀୟତା ଦେବାରେ, ନେବାରେ ନୁହଁ। ଜୀବନର କଣ୍ଟକିତ ପନ୍ଥରେ ଚାଲୁ ଚାଲୁ– ବ୍ୟକ୍ତି ବିଶେଷଙ୍କୁ ହେଉ ବା ସମାଜକୁ ସାମଗ୍ରିକ ଭାବରେ ହେଉ– ପ୍ରତ୍ୟେକଟି ବ୍ୟକ୍ତିର କିଛି ଦାନ ଦେବାର ଆବଶ୍ୟକତା ଅଛି। ଜଣକର କର୍ମ, ଅନ୍ୟ ଜଣେ ବ୍ୟକ୍ତିର ବା ସମଷ୍ଟିଗତ ଭାବେ ସମାଜର କାମରେ ଯଦି ଲାଗି ପାରିଲା, ତା'ହେଲେ ତା' ଜୀବନ ଧନ୍ୟ ବୋଲି ଧରିବାକୁ ହେବ। ଛାତ୍ରମାନେ ଗଭୀର ଅଧ୍ୟବସାୟ ଦ୍ୱାରା ଯେ କେବଳ ଅଧ୍ୟୟନ କରିବା ଉଚିତ୍, ତା' ନୁହେଁ– ତାହା ସହ ସମାଜର ବିଭିନ୍ନ ଦିଗରେ କିପରି ଏକ ସୁଯୋଗ୍ୟ କର୍ମୀର ଭୂମିକା ଗ୍ରହଣ କରିପାରିବେ, ସେ ବିଷୟରେ ମଧ୍ୟ ଧ୍ୟାନ ଦେବା ଉଚିତ୍।"

କହିବା ବାହୁଲ୍ୟ, ସେଇ ଅପରିପକ୍ୱ ଭାଗ୍ୟବାନ ତରୁଣଜଣକ– ଏଇ ସ୍ମୃତିଚାରଣ କରୁଥିବା ଲେଖକ ଜଣେ କଥାକାର।

ଡଃ ମହତାବଙ୍କ ସଙ୍ଗେ ଆଳାପ କରିବାର ନିମନ୍ତ୍ରଣ ପାଇଥିବାରୁ ଅଧ୍ୟାପକ ଏବଂ ସହଧ୍ୟାୟୀ ବନ୍ଧୁମାନେ ମତେ ଘେରିଯାଇ ଆଳାପର ସମ୍ଭାବ୍ୟ ବିଷୟବସ୍ତୁର ଏକ ସୁଦୀର୍ଘ ତାଲିକା ରଖିଲେ। ଶେଷରେ ସଭାପରେ ଓଡ଼ିଆ ସାହିତ୍ୟ ବିଭାଗର ମୁଖ୍ୟଙ୍କ ଗହଣରେ ମୋର ସେଇ ଉଜ୍ଜ୍ୱଳ ବ୍ୟକ୍ତିତ୍ୱଙ୍କ ସହ ସାକ୍ଷାତ ହେଲା। ସଭା ସନ୍ନିକଟ ଏକ ଶ୍ରେଣୀ ଗୃହରେ ଡଃ ମହତାବଙ୍କ

ବସିବାର ବ୍ୟବସ୍ଥା ହୋଇଥିଲା । ସେ ପ୍ରଥମେ ପ୍ରଶ୍ନ କଲେ–

ହଇଏ ! ତୁମ ତ ସବୁ ଲେଖୁଛ– କ'ଣ ଲେଖିବାକୁ ତୁମକୁ ବେଶି ଭଲ ଲାଗେ କହିଲ ? ଗଳ୍ପ, କବିତା ନାଁ ଏକାଙ୍କିକା ?

ସଙ୍କୁଚିତ ହୋଇ ମୁଁ କହିଲି–ଗଳ୍ପ ।

ସଦ୍ୟ ଉନ୍ମୋଚନ କରିଥିବା ମହାବିଦ୍ୟାଳୟର ମୁଖପତ୍ରର ପୃଷ୍ଠା ଓଲଟାଉ ଓଲଟାଉ ସେ କହିଲେ– ତା'ହେଲେ ତ ଏଥିର ତୁମର ଗଳ୍ପ ଥିବ !

ମୁଁ କିଛି କହିବାପୂର୍ବରୁ ସେ ନିଜେ ଗପ ଖୋଜିନେଲେ ଏବଂ ପୃଷ୍ଠାରେ ଦାଗ ଦେଇ କହିଲେ–

''ଅଭ୍ୟାସ ସବୁବେଳେ ରଖିବ । ଯାହା ଇଛା ଲେଖିଯିବ– ଯେତେ ପାରିବ ପଢ଼ିବ– ଲେଖକ ହେବାକୁ ହେଲେ ଲେଖିବାର କଷ୍ଟକୁ ଅଭ୍ୟାସ କରିବାକୁ ହେବ ।''

କଥା କିଛି କହିବାର ନଥିଲା– ଇଚ୍ଛାଥିଲା କେବଳ ତାଙ୍କ କଥା ଶୁଣିବା ପାଇଁ– ସେଇ ଶୁଣାକଥା ଭିତରୁ କେତୋଟି କଥା ମନ ଭିତରେ ଏମିତି ବସା ବାନ୍ଧି ରହିଯାଇଛି । ସଂପ୍ରତି ଲେଖିବାର କଷ୍ଟ ଯେ ପ୍ରସବ ବେଦନାଠାରୁ ବି କଷ୍ଟକର, ଏଇ କଥା ଅନୁଭବ କଲାବେଳେ ଡଃ ମହତାବଙ୍କ ସହ ସେଇ ଅନ୍ତରଙ୍ଗ ସାକ୍ଷାତର ସ୍ମୃତିଟି ହିଁ ମନେପଡ଼େ ।

ଅଭ୍ୟାସର ମୂଲ୍ୟ ଅନନ୍ୟ– ଥରେ ଛାଡ଼ିଦେଲେ ତାକୁ ଧରିବା ଭାରି କଷ୍ଟ ।

ଆମେ ସେତେବେଳେ ଏକ ମିନି ପତ୍ରିକା ''ବ୍ରତତୀ'' ବାହାର କରୁଥାଉ । ଚାରି-ପାଞ୍ଚଟି ସଂଖ୍ୟା ପ୍ରକାଶ ପାଇଥାଏ । ସେଥିରୁ ଗୋଟିଏ ଗୋଟିଏ ଡକ୍ଟର ମହତାବଙ୍କୁ ଉପହାର ଦେଇଥିଲି । ସେ ତାହାକୁ ଦି'ମାସ ଅନ୍ତରରେ ବାହାର କରିବାକୁ ଉପଦେଶ ଦେଇଥିଲେ ଏବଂ ତାଙ୍କ ଆଡୁ କହିଥିଲେ– ''ତମେ ପାଣ୍ଡୁଲିପି ସବୁ ନିର୍ଦ୍ଦିଷ୍ଟ କରି ମୋ ପାଖକୁ ଡାକରେ ପଠାଇଦେବ– ମୁଁ ତମର ଛପା ଦାୟିତ୍ୱ ଦୁଇଟି ସଂଖ୍ୟାର ନେବି ।''

ପରବର୍ତ୍ତୀ ସମୟରେ ତାହା ହିଁ ହୋଇଥିଲା ''ବ୍ରତତୀ''ର ଦୁଇଟି ସଂଖ୍ୟା ବିନାମୂଲ୍ୟରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ପ୍ରକାଶିତ

ହୋଇଥିଲା । କେବଳ ମୁଁ ନୁହେଁ– ସେତେବେଳେ ସୁନ୍ଦରଗଡ଼ର ବହୁ ତରୁଣ ଲେଖକ– ଡଃ ମହତାବଙ୍କ ଏଇ ମହାର୍ଘ ସୌଜନ୍ୟରେ ମୁଗ୍ଧ ହୋଇଥିଲେ ।

ପରେ ୧୯୭୮ ମସିହାରେ ଓଡ଼ିଶା ଯୁବ ଶିଳ୍ପୋଦ୍ୟୋଗୀ ସଂଘର ମୁଁ ସଭାପତି ଥିବାବେଳେ ଡଃ ମହତାବଙ୍କୁ ସଂଘର ବାର୍ଷିକ ସମ୍ମେଳନକୁ ମୁଖ୍ୟ ଅତିଥି ଭାବେ ନିମନ୍ତ୍ରଣ କରିଥିଲି । ସେଦିନ ମଧ୍ୟ ବୟସର ଅନ୍ତିମ ପାହାଚରେ ଥାଇ କୁଟୀରଶିଳ୍ପ ଏବଂ କ୍ଷୁଦ୍ରଶିଳ୍ପ ବିଷୟରେ ତାଙ୍କର ନିଜସ୍ୱ ମୌଳିକ ମତକୁ ସୁନ୍ଦର ଭାବେ ଯୁବ-ଶିଳ୍ପୋଦ୍ୟୋଗୀମାନଙ୍କୁ ବୁଝାଇଥିଲେ ।

ଡଃ ମହତାବ, ରାଜନୀତି ହେଉ ବା ଶିକ୍ଷାନୀତି ହେଉ, ସାହିତ୍ୟ ହେଉ ବା ଇତିହାସ ହେଉ; ସବୁ କ୍ଷେତ୍ରରେ ଥିଲେ ଅଗ୍ରଣୀ, ଅପରାଜେୟ । ତାଙ୍କର ଅଭିବ୍ୟକ୍ତି ଏବଂ ସନ୍ଦେଶ ଥିଲା ସମସ୍ତଙ୍କ ପାଇଁ ଏକ ଛାୟା ଘନ ମରୂଦ୍ୟାନ ।

ଓଡ଼ିଶାର ଲେଖକ, ଐତିହାସିକ, ରାଜନୀତିଜ୍ଞ ଏବଂ ସାହିତ୍ୟିକମାନଙ୍କ ପାଇଁ ଏ ଶତାବ୍ଦୀର ସମୁଦ୍ରରେ ଡଃ ହରେକୃଷ୍ଣ ମହତାବ ଏକ ବତୀଘର ପରି ଚିର ଜାଜ୍ୱଲ୍ୟମାନ ହୋଇ ରହିବେ ।

ଚଉଧୁରୀ ବଜାର, କଟକ



# ମୁଁ, ୧୯୮୦ ଲୋକସଭା ନିର୍ବାଚନ ଓ ମହତାବଜୀ

**ଆଚାର୍ଯ୍ୟ ଭାବାନନ୍ଦ**

୧୯୮୦ ଲୋକସଭା ନିର୍ବାଚନରେ ମୁଁ ଭୁବନେଶ୍ୱର ନିର୍ବାଚନମଣ୍ଡଳୀରୁ ସ୍ୱାଧୀନ ଭାବରେ ପ୍ରାର୍ଥୀ ହେବାକୁ ସ୍ଥିର କରିବା ପରେ ମହତାବଜୀଙ୍କଠାରୁ ଏକାମ୍ର ନିବାସରୁ ହଠାତ୍ ଫୋନଟିଏ ପାଇଲି– "ବାବୁ ଡାକୁଛନ୍ତି, ଆସି, କଥାବାର୍ତ୍ତା କରନ୍ତୁ।"

ଦିନେ ସକାଳେ ଯାଇ ପହଞ୍ଚିଲି। ତାଙ୍କ ଦରବାର ହଲରେ ସେ, ଜଣେ ବ୍ୟବସାୟୀ ଓ ମୁଁ। ମତେ ପଚାରିଲେ "ଲୋକସଭା ନିର୍ବାଚନ ଏତେ ସହଜ ନୁହେଁ। ଏଥିରେ କାହିଁକି ପଶିବାକୁ ଆଗ୍ରହ କଲେ।" ଉତ୍ତର ଦେଲି ଓଡ଼ିଶା ସରକାର ମୋର ଚାକିରୀ (ପୂର୍ବତନ) ଆଦି ବିଷୟରେ ଯେପରି "ଆଇନଗତ" ଜଞ୍ଜାଳ ସୃଷ୍ଟି କରିଛନ୍ତି (ଏବେ ବି ତାହା ଛିଡ଼ିନି)। ସେଥିରୁ ଉଦ୍ଧାର ପାଇବାକୁ ଏ ନିର୍ବାଚନ ଲଢ଼େଇ। ସେ ଚଟ୍‌କରି କଥାଟି ବୁଝିଗଲେ– କାହିଁକିନା ସେ ଏ ବିଷୟରେ ଆଗରୁ ଜାଣିଥିଲେ ଓ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ଓ ପରବର୍ତ୍ତୀ କାଳରେ ରାଜ୍ୟପାଳଙ୍କ ପରାମର୍ଶଦାତାଙ୍କୁ ଜଣାଇ ମଧ୍ୟ ସଫଳ ହୋଇ ନଥିଲେ।

ତେଣୁ କଥାର ମୋଡ ବଦଳାଇ କହିଲେ, "ତେବେ କାଲି ମନୋନୟନ ପତ୍ର ଦାଖଲ କରିବାକୁ ଯିବେ ତ। ଆପଣଙ୍କର ସମର୍ଥକ କିଏ?" ମୁଁ ହଠାତ୍ ବୁଝିନେଲି, ଏ ସ୍ୱାଧୀନ ରାଷ୍ଟ୍ରରେ ବି "ସମର୍ଥକ" ପାଇବା କଷ୍ଟକର ହୋଇପାରେ। ବଡ଼ ବଡ଼ ରାଜନୈତିକ ଦଳ ଆଖି ଦେଖାଇ ଏହା ବନ୍ଦ କରାଇ ଦେଇ ପାରନ୍ତି। ତେଣୁ ଏହି ପ୍ରଶ୍ନଟି ମତେ ସତର୍କ କରାଇ ଦେଇଥିଲା।

ପରଦିନ ପୁରୀରେ ପହଞ୍ଚିଲି– ମନୋନୟନ ପତ୍ର ଦାଖଲ କରିବାକୁ।

ସିଧାସଳଖ ଯାଇ ପହଞ୍ଚିଲି "ଅଧ୍ୟାପକ ବିଶ୍ୱରଞ୍ଜନ"ଙ୍କ ତଳମାଳ ସାହୀର "ଉଷାମହଲ"ରେ। ତାଙ୍କ ବାପା ଶ୍ରୀ ଲକ୍ଷ୍ମୀଧର ମହାପାତ୍ରଙ୍କୁ ଡାକିଲି, "ମଉସା, ଯିବା ଚାଲନ୍ତୁ– ଆପଣ ମୋର ସମର୍ଥକ ହେବେ।" ଗୋଟିଏ ରିକ୍ସାରେ ମନୋନୟନ ପତ୍ର ଦାଖଲ କରିବାକୁ ଗଲୁ। ନିର୍ଦ୍ଧାରିତ ସ୍ଥାନରେ ପହଞ୍ଚିଲାବେଳକୁ ସେଠି କଂଗ୍ରେସ ପ୍ରାର୍ଥୀ ଶ୍ରୀଯୁକ୍ତ ଚିନ୍ତାମଣି ପାଣିଗ୍ରାହୀଙ୍କ ସମର୍ଥକ ଭାବରେ ଶ୍ରୀଯୁକ୍ତ ଗଙ୍ଗାଧର ମହାପାତ୍ର ଉପସ୍ଥିତ ଥାନ୍ତି। ପଚାରିଲେ– "ଆପଣଙ୍କ ସମର୍ଥକ କିଏ?" ଦେଖାଇ ଦେଲି ଶ୍ରୀଯୁକ୍ତ ଲକ୍ଷ୍ମୀଧର ମହାପାତ୍ରଙ୍କୁ। ସେ ଜଣେ ଭୋଟର ଓ ନାଗରିକ। କିନ୍ତୁ ତାଙ୍କୁ ଚିହ୍ନୁଛି କିଏ? ସେତିକିବେଳେ ତରବରରେ ଆସି ପହଞ୍ଚିଗଲେ ପ୍ରଜାତନ୍ତ୍ରର ସାମ୍ବାଦିକ ପ୍ରଫୁଲ୍ଲ ମହାନ୍ତି– ଆସି କହିଲେ, ବାବୁ ଭୁବନେଶ୍ୱରୁ ଫୋନ୍ କରିଥିଲେ, ଭାବଗ୍ରାହୀ ବାବୁ ପୁରୀ ଯାଇଛନ୍ତି, ମନୋନୟନ ପତ୍ର ଦାଖଲ କରିବାକୁ। କେହି କାହିଁକେ ରାଜି ନ ହୁଅନ୍ତି– ପ୍ରଫୁଲ୍ଲ ତୁମେ ତାଙ୍କ ସମର୍ଥକ ହୋଇଯିବ।" ତେଣୁ ପ୍ରଫୁଲ୍ଲ ମହାନ୍ତି ଥିଲେ ଅନ୍ୟତମ ସମର୍ଥକ।

"ନିର୍ବାଚନ"ରେ କିଭଳି ରାଜନୈତିକ କୌଶଳ ପ୍ରୟୋଗ ହୁଏ, ସେ ବିଷୟରେ ମହତାବଜୀ ଧୁରନ୍ଧର ବ୍ୟକ୍ତି ଥିଲେ। ତାଙ୍କ ସହିତ କାମ କରିବାରେ ଏଭଳି ବହୁ "ରାଜନୈତିକ କୌଶଳ" ଶିଖା ହୋଇଛି– ଗଣତନ୍ତ୍ରକୁ ରକ୍ଷା କରିବାକୁ। ତେଣୁ "ଭାରତର ଗଣତନ୍ତ୍ର"ର ବହିପାଠ ଓ ନିର୍ବାଚନରେ ଯାହା ସବୁ ଘଟେ ବା ଘଟାଇ ଦିଆଯାଏ, ସେଥିରୁ ମହତାବଜୀଙ୍କର ରାଜନୈତିକ ବିଚକ୍ଷଣତାର ସୂଚନା ମଧ୍ୟରୁ ଏ ଘଟଣା ଛୋଟିଆ ସ୍ମୃତିଟିଏ।

ସଭାପତି, ସର୍ବୋଦୟ ପାର୍ଟି
ଓଡ଼ିଶା ରାଜ୍ୟ ଶାଖା
ଭୁବନେଶ୍ୱର-୭୫୧୦୦୧



# ଉତ୍କଳକେଶରୀ ଡଃ ହରେକୃଷ୍ଣ ମହତାବ

**ସରୋଜ କୁମାର ସିହ୍ନା**

ଆମ ଦେଶର ସ୍ୱାଧୀନତା ସଂଗ୍ରାମରେ ଉତ୍କଳର ଯେଉଁ କେତେଜଣ ବରପୁତ୍ରମାନେ ଝାସ ଦେଇଥିଲେ, ଡଃ. ହରେକୃଷ୍ଣ ମହତାବ ସେମାନଙ୍କ ମଧ୍ୟରେ ଅନ୍ୟତମ ଓ ଅବିସ୍ମରଣୀୟ ଅଟନ୍ତି। ସେ ଏକାଧାରରେ ଜଣେ ପ୍ରତିଷ୍ଠିତ ଲେଖକ, ଐତିହାସିକ, ସାହିତ୍ୟିକ, ସାମ୍ବାଦିକ, ବାଗ୍ମୀ, ଦକ୍ଷ ପ୍ରଶାସକ ଓ ରାଜନୀତିଜ୍ଞ ଥିଲେ। ସେ ଉତ୍କଳକେଶରୀ ଉପାଧିରେ ଭୂଷିତ ହୋଇଥିଲେ।

୧୮୯୯ ମସିହା ନଭେମ୍ବର ୨୧ ତାରିଖରେ ସେ ଅଧୁନା ଭଦ୍ରକ ଜିଲ୍ଲାର ଅଗରପଡ଼ା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ପିତା କୃଷ୍ଣଚନ୍ଦ୍ର ଦାସଙ୍କର ସେ ଦ୍ୱିତୀୟ ପୁତ୍ର ଥିଲେ। ତାଙ୍କର ଅଜା ଜଗନ୍ନାଥ ମହତାବ, ଅଗରପଡ଼ା ଜମିଦାରଙ୍କର କୌଣସି ପୁତ୍ର ସନ୍ତାନ ନଥିବାରୁ ନାତି ହରେକୃଷ୍ଣଙ୍କୁ ୭ ବର୍ଷ ବୟସରେ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରିଥିଲେ ଓ ସେହିଦିନଠାରୁ ହରେକୃଷ୍ଣ ମହତାବ ନାମରେ ନାମିତ ହେଲେ।

ସେତେବେଳେ ଜମିଦାରମାନେ ରାଜାଭାବରେ ପୂଜାପାଉଥିଲେ। ଅଜା ଜଗନ୍ନାଥ ମହତାବଙ୍କ ମୃତ୍ୟୁବେଳକୁ ହରେକୃଷ୍ଣ ମହତାବ ନାବାଳକ ଥିବାରୁ ଜମିଦାରୀ କାର୍ଯ୍ୟ ବୁଝାସୁଝା ଓ ଚଳାଇବା ନିମନ୍ତେ ତାଙ୍କର ନିଜର ଜନ୍ମଦାତା ପିତା କୃଷ୍ଣଚରଣ ଦାସ ଜମିଦାର ଦାୟିତ୍ୱ ତୁଲାଇଲେ। ପିତା କୃଷ୍ଣଚରଣ ଦାସ ବେଶୀ ପାଠ ନପଢ଼ିଥିଲେ ମଧ୍ୟ ଜଣେ ଲୋକପ୍ରିୟ ଶାସକ ବା ଜମିଦାର ଭାବରେ ସର୍ବାଦୃତ ହୋଇଥିଲେ।

ହରେକୃଷ୍ଣ ଓ ତାଙ୍କର ବଡ଼ଭାଇ ନରସିଂହ ଗ୍ରାମସ୍କୁଲରେ ପାଠପଢ଼ା ଆରମ୍ଭ କରିଥିଲେ ଓ ସେମାନଙ୍କର ଇଂରାଜୀ ଶିକ୍ଷା ନିମନ୍ତେ ପିତା କୃଷ୍ଣଚରଣ ସ୍ୱତନ୍ତ୍ର ଶିକ୍ଷାଦାନର ବ୍ୟବସ୍ଥା ଦୁଇଜଣ ଶିକ୍ଷକଙ୍କ ଦ୍ୱାରା କରାଇଥିଲେ। ଗ୍ରାମ ସ୍କୁଲରୁ ଶିକ୍ଷା ସମାପ୍ତ କରି ହରେକୃଷ୍ଣ ଭଦ୍ରକ ହାଇସ୍କୁଲରେ ନିଜ ପାଠପଢ଼ା

ଆରମ୍ଭ କଲେ । ତତ୍କାଳୀନ ପ୍ରଧାନ ଶିକ୍ଷକ ଶ୍ରୀ ହେମେନ୍ଦ୍ର ପାଲ ହରେକୃଷ୍ଣଙ୍କ ଶ୍ରେଣୀରେ ପ୍ରଥମସ୍ଥାନ ରଖୁଥିବାରୁ ବିଶେଷ ଭାବରେ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଭାରି ଭଲ ପାଉଥିଲେ ।

ସେ ସମୟରେ ଯାତ୍ରା ବା ପାଲାଗୁଡିକ ଗୀତିନାଟ୍ୟ ଆକାରରେ ପରିବେଷିତ ହେଉଥିବାରୁ ଡଃ ମହତାବ ପିଲାଦିନରୁ ସେଗୁଡିକ ପ୍ରତି ଅନୁପ୍ରାଣିତ ହେବା ସଙ୍ଗେ ସଙ୍ଗେ ନିଜେ ରାମାୟଣ ରଚନା କରିଥିଲେ ।

ହାଇସ୍କୁଲର ଛାତ୍ର ଥିବା ବେଳେ ତାଙ୍କୁ ମାତ୍ର ୧୩ ବର୍ଷ ହୋଇଥିଲା । ଛାତ୍ରାବସ୍ଥାରେ ଉତ୍କଳ ସମ୍ମିଳନୀର ପ୍ରଚାରକ ଅନନ୍ତ ମିଶ୍ର ଭଦ୍ରକରେ ଏକ ସଭା କରିବାକୁ ଯାଇଥିଲେ । କେତେକଙ୍କର ବିରୋଧ ସତ୍ତ୍ୱେ ମହତାବ ଓ ତାଙ୍କର କେତେଜଣ ସହପାଠୀ ସଭାକାର୍ଯ୍ୟରେ ସାହାଯ୍ୟ କରିଥିଲେ ।

ହାଇସ୍କୁଲର ଛାତ୍ରାବସ୍ଥାରେ ତାଙ୍କ ମାତାଙ୍କର ପରଲୋକ ହୋଇଯିବାରୁ ହରେକୃଷ୍ଣ ଭାଙ୍ଗି ପଡ଼ିଥିଲେ । ମାତ୍ର ଭଦ୍ରକର ରାମକୃଷ୍ଣ ମିଶନର ସ୍ୱାମୀ ବ୍ରହ୍ମାନନ୍ଦ ଓ ସ୍ୱାମୀ ଶଙ୍କରାନନ୍ଦଙ୍କର ସମ୍ପର୍କରେ ଆସି ମାତୃ ବିୟୋଗ ଭୁଲି ଯାଇଥିଲେ । ମାତାଙ୍କର ମୃତ୍ୟୁ ପରେ ହରେକୃଷ୍ଣଙ୍କୁ ପାଠପଢ଼ା ଛାଡି ଜମିଦାରି ବୁଝିବାକୁ ପିତା ବାଧ କରିବାରୁ ପିତାଙ୍କୁ ଖୁସି କରିବା ପାଇଁ ହରେକୃଷ୍ଣଙ୍କୁ ୬ ମାସ ପାଇଁ ଜମିଦାରୀ ଦାୟିତ୍ୱ ବୁଝିବାକୁ ପଡ଼ିଥିଲା ।

ପରେ ପରେ ମଧ୍ୟ କଟକ ଜିଲ୍ଲା ଅନ୍ତର୍ଗତ ଅଶୁରେଶ୍ୱର ଗ୍ରାମର ଶ୍ରୀ ଆନନ୍ଦରାମ ସିଂହଙ୍କ କନ୍ୟା ଶୁଭଦ୍ରାଙ୍କୁ ବିବାହ କଲେ । ବିବାହ ପରେ ପୁନରାୟ ହାଇସ୍କୁଲ ଶିକ୍ଷାଲାଭ ଓ ମ୍ୟାଟ୍ରିକ୍ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ । ପରେ ତାଙ୍କର ଉଚ୍ଚଶିକ୍ଷା ପ୍ରତି ପ୍ରବଳ ଆଗ୍ରହ ଥିବାରୁ ବାପା ବାଧ ହୋଇ ହରେକୃଷ୍ଣର କଲେଜ ଶିକ୍ଷା ନିମିତ୍ତ କଟକ ପଠାଇଲେ ରେଭେନ୍ସା କଲେଜରେ ବିଜ୍ଞାନଛାତ୍ର ଭାବରେ ପଢ଼ିଲେ ଓ ଗୋଟିଏ ଛୋଟ ମେସ୍‌ରେ ରହିଲେ । ସେତେବେଳେ ନବକୃଷ୍ଣ ଚୌଧୁରୀ ଓ ପ୍ରହଲ୍ଲାଦ ସାହୁଙ୍କ ସହ ପରିଚିତ ହେଲା । ନବ ଚୌଧୁରୀ ବରାବର ତାଙ୍କର ମେସ୍‌କୁ ଆସୁଥିଲେ ଓ ବିଭିନ୍ନ ପ୍ରକାର ସମାଜସେବା ଓ ସଂଗଠନମୂଳକ କାର୍ଯ୍ୟ କରୁଥିଲେ । କଲେଜରେ ପଢ଼ିବା ବେଳେ ତାଙ୍କୁ ମାତ୍ର ୧୭ବର୍ଷ ହୋଇଥିଲା ।

ବିଜ୍ଞାନରେ ଆଇ.ଏସ୍.ସି. ପାଶ୍ କରିବା ପରେ ସଂସ୍କୃତ ଓ ଅର୍ଥନୀତି

ବିଷୟ ନେଇ ବି.ଏ. ପଢ଼ିଲେ।

୧୯୧୮ ମସିହାରେ ମଧୁବାରିଷ୍ଟରଙ୍କର ଅଧ୍ୟକ୍ଷତାରେ ଉତ୍କଳ ସମ୍ମିଳନୀ ବସିଥିଲା ଓ ହରେକୃଷ୍ଣ ବିଶେଷ ଭାବରେ ଅନୁପ୍ରାଣିତହୋଇ ଥିଲେ।

ବି.ଏ. ପରୀକ୍ଷା ଶେଷ ହେବାକୁ ଅଳ୍ପଦିନ ଅଛି, ସେହି ସମୟରେ ରାଓଲେଟ ଆଇନ ଓ ଜାଲିଓ୍ବାନାଓ୍ବାଗ୍ ହତ୍ୟାକାଣ୍ଡଭଳି ଘଟଣାର ପ୍ରତିବାଦରେ ସତ୍ୟାଗ୍ରହ ଓ ମହାତ୍ମା ଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନର ସୂତ୍ରପାତ ହେଲା ଓ ସେହି ସ୍ରୋତରେ ହରେକୃଷ୍ଣ ସମ୍ପୂର୍ଣ୍ଣମାତ୍ରାରେ ସମର୍ଥନ କରି ନିଜକୁ ଝାସ ଦେଲେ।

୧୯୨୦ ମସିହାରେ "ଭାରତୀମନ୍ଦିର" କଟକସ୍ଥ ବାଖରାବାଦରେ ସ୍ଥାପିତ ହେଲା ଓ ତାହାର ଦାୟିତ୍ୱରେ ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ ଓ ଭାଗିରଥି ମହାପାତ୍ର ଥିଲେ। କଲିକତାଠାରେ କଂଗ୍ରେସ ସମ୍ମିଳନୀକୁ 'ଭାରତୀମନ୍ଦିର' ତରଫରୁ ହରେକୃଷ୍ଣ ମହତାବ ଓ ମୋହନ ନାଇଡୁଙ୍କୁ ପଠାଯାଇଥିଲା। କଲିକତାର ଗୋଲଜୀଙ୍କ ଘରେ କଂଗ୍ରେସ ସଭା ବସିଥାଏ। ସେଥିରେ ଯୋଗଦେବାକୁ ଭାରତର ବିଭିନ୍ନ ସ୍ଥାନରୁ ମୋତିଲାଲ ନେହେରୁ, ଲାଲା ରାଜପତ୍‌ରାୟ, ମହାତ୍ମା ଗାନ୍ଧୀ, ପଣ୍ଡିତ ମଦନମୋହନ ମାଲବ୍ୟ ଓ ଚିତ୍ତରଞ୍ଜନ ଦାସଙ୍କର ଓଜସ୍ୱିନୀ ବକ୍ତୃତା ଡଃ ମହତାବଙ୍କୁ ମନ୍ତ୍ରମୁଗ୍ଧବତ୍ ଅଭିଭୂତ କରିଥିଲା ଓ ଅସହଯୋଗ ଆନ୍ଦୋଳନକୁ ସମ୍ପୂର୍ଣ୍ଣ ଭାବରେ ସମର୍ଥନ କରିବାକୁ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ।

କଟକ ସମ୍ମିଳନୀରୁ ଫେରିବା ବାଟରେ ନିଦ୍ରାବସତ କଟକ ଷ୍ଟେସନରେ ଓହ୍ଲାଇ ନପାରିବାକୁ କିଛି ସମୟ ପରେ ଟ୍ରେନ୍‌ର ଚେନ୍ ଟାଣିଥିବାରୁ ନିଜକୁ ଜୋରିମାନା ଦେବାକୁ ପଡିଥିଲା।

ପୁନରାୟ ନାଗପୁର ସମ୍ମିଳନୀରେ ଯୋଗଦେବା ନିମନ୍ତେ ହରେକୃଷ୍ଣ ମହତାବ ଓ ଭାଗରଥି ମହତାବ ଯାଇଥିଲେ ଓ ସେଠାରେ ଉତ୍କଳମଣି ଗୋପବନ୍ଧୁ ଦାଶଙ୍କ ସହ ପରିଚିତ ହୋଇଥିଲା।

ଓଡ଼ିଶାରେ ଗାନ୍ଧିଜୀଙ୍କର ଗସ୍ତପରେ ମହତାବ ବାଲେଶ୍ୱର ଯାଇ "ସ୍ୱରାଜ୍ୟ ମନ୍ଦିର" ପ୍ରତିଷ୍ଠା କଲେ ଓ ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ ସ୍ୱରାଜ୍ୟ ଆଶ୍ରମ

ପ୍ରତିଷ୍ଠା କରିବାକୁ ଓ କଂଗ୍ରେସ ସଭ୍ୟ ସଂଗ୍ରହ ପାଇଁ ସ୍ଥିର ହେଲା । ବାଲେଶ୍ୱରରେ କଂଗ୍ରେସ ସଂଗଠନ କରାଗଲା । ସ୍ୱାଧୀନତା ଆନ୍ଦୋଳନରେ ମହତାବ ବହୁବାର ଜେଲ ଗଲେ । ଜେଲରୁ ମୁକ୍ତ ହୋଇ ହଜାରିବାଗ ଜେଲରେ ଥିବା ଗୋପବନ୍ଧୁଙ୍କୁ ଦେଖା କରିବାକୁ ମହତାବ ସେଠାକୁ ଗଲେ । ପଣ୍ଡିତ ନୀଳକଣ୍ଠ ଦାଶ ସେଦିନ ହଜାରିବାଗ ଜେଲରୁ ଖଲାସ ହୋଇ ମହତାବଙ୍କ ସହ ଓଡ଼ିଶା ଫେରିଲେ ।

କଟକରେ ହରେକୃଷ୍ଣ ମହତାବ ୧୯୨୩ ମସିହା ଜୁନ ମାସରେ ପ୍ରଜାତନ୍ତ୍ର ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ ମୁକୁର ପ୍ରେସ ଦ୍ୱାରା କରାଗଲା । ବିର କିଶୋର ଦାସ ତାହାର ମୁଦ୍ରଣ ଓ ପ୍ରକାଶନ ଦାୟିତ୍ୱରେ ଥିଲେ ।

୧୯୨୪ ବାଲେଶ୍ୱର ମ୍ୟୁନିସ୍‌ପାଲିଟିର ଚେୟାରମ୍ୟାନ ଭାବରେ ମହତାବ ନିର୍ବାଚିତ ହେଲେ ।

୧୯୨୫ ମସିହାରେ ମହତାବ ସ୍ୱରାଜ ମନ୍ଦିରରେ ହ୍ୟାଣ୍ଡପ୍ରେସ୍ ପ୍ରତିଷ୍ଠା କଲେ ଓ ସେଠାରୁ ପ୍ରଜାତନ୍ତ୍ର ପ୍ରକାଶ ପାଇଲା । ତା' ଛଡା ସାପ୍ତାହିକ ପତ୍ରିକା 'ସ୍ୱରାଜ୍ୟ ସମାଚାର' ପ୍ରକାଶ ପାଇଲା । ୧୯୨୭ ମସିହାରେ ଇଂରାଜୀ ପତ୍ରିକା 'ଆଡ଼ଭେଞ୍ଚର' ସ୍ୱରାଜ୍ୟ ମନ୍ଦିରରୁ ପ୍ରକାଶ କଲେ ।

ବଲେଶ୍ୱର ଇଞ୍ଚୁଡ଼ିଠାରେ ୧୯୩୦ ମସିହାରେ ତାଙ୍କ ଦ୍ୱାରା ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ସେଥିରେ ସେ ୮ ମାସ କାରାବରଣ କଲେ । ଜେଲରୁ ଫେରିବା ପରେ ଗାନ୍ଧିଜୀଙ୍କ ପରାମର୍ଶ କ୍ରମେ ଅଗରପଡ଼ାଠାରେ ଗାନ୍ଧୀକର୍ମ ମନ୍ଦିର ପ୍ରତିଷ୍ଠା କଲେ ।

୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ଭାଗନେବା ଦ୍ୱାରା ପଣ୍ଡିତ ଜବାହାରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ମୌଲାନା ଆବୁଲ କାଲାମ ଆଜାଦ୍, ଜେ.ବି. କୃପାଳିନୀ, ଶଙ୍କର ରାଓ ଦେଓ, ଆଚାର୍ଯ୍ୟ ନରେନ୍ଦ୍ର ଦେଓ ଡାକ୍ତର ପଟ୍ଟାଭି ସୀତାରାମାୟା ପ୍ରଭୃତିଙ୍କ ସହ କାରାବରଣ କରିଥିଲେ ।

ସ୍ୱାଧୀନତା ପରେ ୧୯୪୬ ମସିହାରେ ମହତାବ ଓଡ଼ିଶାର ପ୍ରଧାନ ମନ୍ତ୍ରୀ ହେବାର ଗୌରବ ଅର୍ଜନ କଲେ ।

୧୯୫୦ ମସିହାରେ କେନ୍ଦ୍ର କ୍ୟାବିନେଟ୍ ମନ୍ତ୍ରୀ ହେଲେ ।

୧୯୫୨ ମସିହାରେ ଲୋକସଭା ସଦସ୍ୟ ଓ ୧୯୫୫ ମସିହାରେ ବମ୍ବେର ରାଜ୍ୟପାଳ ହେଲେ । ୧୯୫୬ ମସିହାରେ ରାଜ୍ୟପାଳ ପଦବୀରୁ ଫେରି ପୁନରାୟ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ ।

୧୯୭୧ ମହତାବ କଂଗ୍ରେସ ତ୍ୟାଗକରି ଜନ କଂଗ୍ରେସ ଦଳ ଗଠନ କରିଥିଲେ ।

ତାଙ୍କର ରାଜନୈତିକ ଦକ୍ଷତା ଦ୍ୱାରା ସେ ବହୁ ଉଚ୍ଚ ପଦ ପଦବୀର ଅଧିକାରୀ ହୋଇ ପାରିଥିଲେ । ତାଙ୍କ ସମୟରେ ଆମ ଓଡ଼ିଶାର ବହୁତ ଉନ୍ନତି ସାଧିତ ହୋଇ ପାରିଛି । ସେଥିମଧ୍ୟରୁ ଓଡ଼ିଶାର ରାଜଧାନୀ ଭୁବନେଶ୍ୱର, ହୀରାକୁଦ ବନ୍ଧ, ରାଜ୍ୟ ସଂଗ୍ରହାଳୟ, କଟକ ବାରବାଟୀ ଷ୍ଟାଡିୟମ ଓ ରାଷ୍ଟ୍ରଭାଷା ପ୍ରଚାର ସମିତି ଅନ୍ୟତମ ।

ଶେଷରେ ୧୯୭୭ ମସିହାରେ ମହତାବ ସକ୍ରୀୟ ରାଜନୀତିରୁ ଅବ୍ୟାହତି ନେଇ ଓଡ଼ିଶାର ଉନ୍ନତି ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କର ସ୍ୱାଧୀନ ଚିନ୍ତାଧାରା ଓ ମତାମତ ପରିବେଷଣ ଏକ ନିଖୁଣ ନମୁନା ହରେକୃଷ୍ଣ ମହତାବଙ୍କ ପ୍ରକାଶିତ ଦୈନିକ ପ୍ରଜାତନ୍ତ୍ରର ''ଗାଁ ମଜଲିସ୍'' ଲେଖାରୁ ଅନୁଭୂତ ହୁଏ ।

ଶେଷରେ ୮୮ ବର୍ଷ ବୟସରେ ୧୯୮୭ ମସିହା ଜାନୁୟାରୀ ୨ ତାରିଖ ଦିନ ସେ ସମସ୍ତଙ୍କୁ ଶୋକସାଗରରେ ଭସାଇ ସବୁଦିନ ପାଇଁ ଚାଲିଗଲେ । ତାଙ୍କର ମହତକାର୍ଯ୍ୟ ଓ ଦେଶପାଇଁ ସେବା ତଥା ବହୁ ରଚିତ ପୁସ୍ତକ ଗୁଡିକ ସବୁଦିନ ପାଇଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ଓ ତାଙ୍କର ଅମ୍ଳାନ ପ୍ରତିଭା ଯୁଗେ ଯୁଗେ ବିକଶିତ ହେଉଥିବ ।

କଟକ



# କିଛି ସ୍ମୃତି କିଛି ଅନୁଭୂତି

**ଶ୍ରୀ ରଣଧୀର ଦାସ**

ସ୍ୱର୍ଗତଃ ମହତାବଙ୍କୁ ପ୍ରଥମେ ଦେଖିଥିଲି ମୋର ବଡ଼ବାପା ସ୍ୱର୍ଗତଃ ମୁକୁନ୍ଦପ୍ରସାଦ ଦାସଙ୍କ ବାଲେଶ୍ୱର ବାସଭବନରେ। ସେତେବେଳେ ମୁଁ କଲେଜ ଛାତ୍ର। ତାହା ପ୍ରାୟ ୧୯୫୫ର କଥା। ବଡ଼ବାପା ଥିଲେ ଓଡ଼ିଶା ବିଧାନସଭାର ପ୍ରଥମ ବାଚସ୍ପତି ଏବଂ ବାଲେଶ୍ୱରରେ ଜଣେ ବିଶିଷ୍ଟ ଆଇନଜୀବୀ। ଡଃ. ମହତାବ ତାଙ୍କୁ ପ୍ରଗାଢ଼ ଭକ୍ତି କରୁଥିଲେ। ବାଲେଶ୍ୱର ଗଲେ ତାଙ୍କୁ ଦେଖା କରୁଥିଲେ। ପରାମର୍ଶ ନେଉଥିଲେ।

ବମ୍ବେର ରାଜ୍ୟପାଳ ଥିବାବେଳେ ଡଃ ମହତାବ ବଡ଼ବାପାଙ୍କ ଘରକୁ ଆସନ୍ତି, ଅନେକ ସମୟ ବସି ଓଡ଼ିଶାର ବିଭିନ୍ନ ସମସ୍ୟା ତଥା ବାଲେଶ୍ୱର ସମସ୍ୟା ସମ୍ପର୍କରେ ଆଲୋଚନା କରନ୍ତି। ସେତେବେଳେ ତାଙ୍କ ସହିତ ଏ.ଡି.ସି. ଥାଆନ୍ତି। ଘଣ୍ଟାକୁ ବାରମ୍ବାର ଚାହିଁ ସେ ରାଜ୍ୟପାଳଙ୍କୁ ତାଙ୍କ ପରବର୍ତ୍ତୀ କାର୍ଯ୍ୟକ୍ରମ ସମ୍ପର୍କରେ ସଚେତନ କରଦିଅନ୍ତି ମାତ୍ର ଡଃ. ମହତାବ ସେଥିପ୍ରତି ଆଦୌ ଦୃଷ୍ଟି ଦିଅନ୍ତି ନାହିଁ। ଶେଷରେ ବିରକ୍ତି ପ୍ରକାଶ କରିଥିବା ମୁଁ ଶୁଣିଛି। ଅସନ୍ତୋଷ ଭାବରେ କହିଥିଲେ ସେ ମୋର ଗୁରୁଜନ। ଏଠାରେ ମୋ ପାଇଁ କୌଣସି ସମୟର ମୂଲ୍ୟ ନାହିଁ। ମୋର ପରବର୍ତ୍ତୀ କାର୍ଯ୍ୟକ୍ରମ ବନ୍ଦ ହୋଇଗଲେ ମଧ୍ୟ ଚିନ୍ତା ନାହିଁ। ସେତେବେଳେ ମୁଁ କେବଳ ଦୂରରୁ ଦେଖି ମନେ ମନେ ଖୁସି ହୋଇଥିଲି। ଜଣେ ବିଶିଷ୍ଟ ବ୍ୟକ୍ତିଙ୍କର ନିକଟତର ହୋଇ ପାରିଛି।

ଗୋଟିଏ ବର୍ଷ ପରର ଘଟଣା। ମୁଁ ମାନ୍ଦ୍ରାଜରେ ଇଞ୍ଜିନିଅରିଂ ପଢ଼ିବା ସମୟରେ ମାନ୍ଦ୍ରାଜ ଓଡ଼ିଆ ସମାଜର ଯୁଗ୍ମ ସମ୍ପାଦକ ଏବଂ ସାଧାରଣ ସଂପାଦକ ଦାୟିତ୍ୱ ଗ୍ରହଣ କରିଥିଲି। ମାନ୍ଦ୍ରାଜ ଓଡ଼ିଆ ସମାଜର ବାର୍ଷିକ ଉତ୍ସବକୁ ମୁଖ୍ୟ ଅତିଥି ଭାବେ ନିମନ୍ତ୍ରଣ କରିଥିଲୁ। ଅନୁରୋଧ ରକ୍ଷା କରି ବମ୍ବେର ତତ୍କାଳୀନ ରାଜ୍ୟପାଳ ଡଃ. ହରେକୃଷ୍ଣ ମହତାବ ଆସିଥିଲେ।

ମାନ୍ଦ୍ରାଜ ଓଡ଼ିଆ ସମାଜର କେତେକ କର୍ମକର୍ତ୍ତାଙ୍କ ସହ ବିମାନଘାଟିରେ

ତାଙ୍କୁ ପୁଷ୍ପଗୁଚ୍ଛ ଦେଇ ପାଛୋଟି ଆଣିବାକୁ ଯାଇଥିଲୁ। ସେଠାରେ ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ସାକ୍ଷାତ ହୋଇଥିଲା। ସେମାନେ ମଧ୍ୟ ତାଙ୍କୁ ଭେଟିବା ପାଇଁ ଯାଇଥିଲେ। ସେଇ ଘଟଣାରେ ତାଙ୍କର ଜନପ୍ରିୟତା ଅନୁଭବ କରିଥିଲି। ବିମାନରୁ ଓହ୍ଲାଇବା ମାତ୍ରେ ମୋର ପରିଚୟ ଜାଣିବା ପରେ ଅନେକ ସମୟ ଧରି ବଡ଼ବାପାଙ୍କ ବିଷୟରେ ପଚାରିଥିଲେ। ବିଶିଷ୍ଟ ଓଡ଼ିଶୀ ନୃତ୍ୟ ଶିଳ୍ପୀ ସଂଯୁକ୍ତା ପାଣିଗ୍ରାହୀ ସେତେବେଳେ କଳାକ୍ଷେତ୍ରର ଛାତ୍ରୀ ଥିଲେ। ଓଡ଼ିଆ ସମାଜର ଅନୁରୋଧ ରକ୍ଷା କରି ସେ ମଧ୍ୟ ବାର୍ଷିକ ଉତ୍ସବରେ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ।

ପରେ ପରେ ଡଃ. ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ। ଓଡ଼ିଶାରେ ଆକସ୍ମିକ ଭାବରେ ପ୍ରବଳ ବନ୍ୟା ହେଲା। ଓଡ଼ିଶା ସହିତ ମାନ୍ଦ୍ରାଜର ରେଳ ଯୋଗାଯୋଗ ଛିନ୍ନ ହୋଇଗଲା। ବନ୍ୟା ବିପନ୍ନଙ୍କୁ ସାହାଯ୍ୟ ପାଇଁ ମୋ ନେତୃତ୍ୱରେ ଗୋଟିଏ ହିନ୍ଦୀ ଫିଲ୍ମ 'ନିଉଦିଲ୍ଲୀ' ଚେରିଟି ସୋ କରିଥିଲୁ। ଏହି ସୋ'ରେ ମାନ୍ଦ୍ରାଜର ତତ୍କାଳୀନ ସୁପରଷ୍ଟାର ଏମ୍.ଜି. ରାମଚନ୍ଦ୍ରନ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ବନ୍ୟା ସାହାଯ୍ୟ ପାଇଁ ପାଞ୍ଚ ହଜାର ଟଙ୍କା ଦାନ କରିଥିଲେ। ଏମ.ଜି.ଆର ପରେ ଦୀର୍ଘକାଳ ଧରି ମାନ୍ଦ୍ରାଜର ମୁଖ୍ୟମନ୍ତ୍ରୀ ଥିଲେ। ସେ ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଥିଲେ। ଡଃ ମହତାବଙ୍କ ନାମରେ ଓଡ଼ିଆ ସମାଜ ପକ୍ଷରୁ ଟଙ୍କା ମନିଅର୍ଡର କରି ପଠାଇଥିଲି।

ଓଡ଼ିଶାକୁ ମୁଁ ଫେରି ଆସିବା ପରେ ତାଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ସ୍ଥାପନ ହେଲା। ୧୯୬୬ ରେ ଜୀବନରଂଗ ସାହିତ୍ୟ ପତ୍ରିକା ପ୍ରକାଶ କରିବା ପରେ ସଂଯୋଗ ସୁଦୃଢ଼ ହେଲା। ୧୯୬୩ରେ କ୍ଷୁଦ୍ରଗଳ୍ପ ପାଇଁ ବିଷୁବ ପୁରସ୍କାର ଲାଭ କରିଥିଲି। ତା'ପରେ ପ୍ରଜାତନ୍ତ୍ର ପରିବାରର ମୁଁ ଏକ ସଦସ୍ୟ ହୋଇଗଲି। ପ୍ରତି ସପ୍ତାହରେ ଥରେ ଅନ୍ତତଃ ତାଙ୍କୁ ସାକ୍ଷାତ କରୁଥିଲି। ସେତେବେଳେ ତାଙ୍କ କାର୍ଯ୍ୟାଳୟରେ ସ୍ୱର୍ଗତଃ ଶ୍ରୀହର୍ଷ ମିଶ୍ର, ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହ ବନ୍ଧୁତ୍ୱ ସ୍ଥାପନ ହୋଇଥିଲା। ବିଷୁବ ଉତ୍ସବରେ ପତ୍ରପତ୍ରିକା ଆଲୋଚନାକୁ ମୋତେ ମୁଖ୍ୟବକ୍ତା ଭାବରେ ନିମନ୍ତ୍ରଣ କରିଥିଲେ। ମୁଁ ମଞ୍ଚ ଉପରକୁ ଯିବା ପୂର୍ବରୁ ଦେଖିଲି ଡଃ ମହତାବ ପ୍ରଥମ ଧାଡ଼ିରେ ବସିଥିଲେ।

ତାଙ୍କ ହାତ ଧରି ମଞ୍ଚ ଉପରକୁ ନେଇ କହିଲି ସେ ଦୁଇପଦ କହିବା ପରେ ମୁଁ ମୋର ବକ୍ତବ୍ୟ ଆରମ୍ଭ କରିବି।

ସେ ଆଉ ଏକ ସ୍ମରଣୀୟ ଘଟଣା। ଜୀବନରଂଗ ପୂଜା ସଂଖ୍ୟା ତାଙ୍କ ହାତରେ ଦେଲି। ତାହା କିଛି ସମୟ ଦେଖି ପାଖରେ ବସିଥିବା ଝଙ୍କାରର ସମ୍ପାଦକ ଶ୍ରୀ ସରୋଜ ମହାନ୍ତିଙ୍କୁ କହିଲେ- ''ସରୋଜ ଦେଖ ଜୀବନରଙ୍ଗ ପତ୍ରିକା ଖୁବ୍ ଭଲ ହୋଇଛି। ଆଗାମୀ ସଂଖ୍ୟାରେ ଏହାର ସମାଲୋଚନା ଦେବ।'' ସରୋଜ ବାବୁ ଅଡୁଆରେ ପଡ଼ିଲେ। ମୋତେ କହିଲେ ଗୋଟିଏ ପତ୍ରିକାର ତ ସମାଲୋଚନା ଦେଇ ହେବ ନାହିଁ। ଅନ୍ୟାନ୍ୟପୂଜା ପତ୍ରିକା ତା ସହିତ ଦେବାକୁ ହେବ। ସେ ଜଣେ ଏମିତି ବ୍ୟକ୍ତି ଥିଲେ ହଜାର ହଜାର ବ୍ୟକ୍ତିଙ୍କ ମଧ୍ୟରୁ ପ୍ରକୃତ ଗୁଣ ଥିବା ପ୍ରତିଭାଙ୍କୁ ଚିହ୍ନୁଥିଲେ। ଓଡ଼ିଶାରେ ଲେଖକ ସୃଷ୍ଟି କରିବାରେ ଡଃ. ମହତାବଙ୍କର ପ୍ରମୁଖ ଭୂମିକା ରହିଛି। ତାଙ୍କ ରାଜନୀତି ଚାଟଶାଳୀର ଛାତ୍ର ଶ୍ରୀ ନୀଳମଣି ରାଉତରାୟ, ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ।

ଭାରତରେ ଜରୁରୀ ପରିସ୍ଥିତି ଘୋଷଣା କରାଗଲା। ବହୁ ତୁଙ୍ଗ ନେତାଙ୍କୁ ଗିରଫ କରାଗଲା। ଡଃ ମହତାବଙ୍କୁ ମଧ ଗିରଫ କରାଯାଇଥିଲା। ଫଳରେ ତାଙ୍କ ସହିତ ସେ ସମୟରେ ସାକ୍ଷାତ ହୋଇନଥାଏ। କଳା ବିକାଶ କେନ୍ଦ୍ର ପ୍ରତିଷ୍ଠାରେ ତାଙ୍କର ଏକ ପ୍ରମୁଖ ଭୂମିକା ରହିଛି। ତୃପ୍ତିବୋଷ କର୍ମଜୀବୀ ମହିଳା ନିବାସ ଉଦ୍‌ଘାଟନ କରିବା ପାଇଁ ଆସିଥାଆନ୍ତି। ମୁଁ ସେତେବେଳେ କଳାବିକାଶ କେନ୍ଦ୍ରର ଯୁଗ୍ମ ସଂପାଦକ ଥାଏ। ନିର୍ଦ୍ଧାରିତ ସମୟରେ ଉଦ୍‌ଘାଟନ ହେବ। ଶଙ୍ଖ ହୁଳହୁଳି ଧ୍ୱନିରେ କେନ୍ଦ୍ର ମାର୍ଗ ପ୍ରକମ୍ପିତ। ଅଥଚ ମୁଁ ଓ ଡଃ ମହତାବ କଥୋପକଥନରେ ଭୁଲିଯାଇଛୁ ପରିବେଶ। ସ୍ୱର୍ଗତଃ ବାବୁଲାଲ ଜୋଷୀ କହିଲେ— ରଣଧୀରବାବୁଙ୍କୁ ମହତାବଜୀଙ୍କୁ ଏ ପାଖକୁ ଆଣନ୍ତୁ, ଫିତା କାଟି ଉଦ୍‌ଘାଟନ କରିବେ।

ତାଙ୍କର ଦେହାନ୍ତ କିଛି ମାସ ପୂର୍ବରୁ ସେ ଅସୁସ୍ଥ ଥିଲେ। ସୁସ୍ଥ ହେବା ପରେ ତାଙ୍କର ବିହାରୀବାଗ ଅଫିସ୍‌କୁ ଯାଇଥିଲି। ମୁଁ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲି। ପୂର୍ବରୁ ବସିଥିଲେ ବର୍ତ୍ତମାନର ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ ବିଶ୍ୱାଳ ଏବଂ ସ୍ୱର୍ଗତଃ ରଘୁମଣି ପଟ୍ଟନାୟକ, ବାରିଷ୍ଟର। ପ୍ରାୟ ଏକଘଣ୍ଟା

ବିଭିନ୍ନ ଆଲୋଚନା ପରେ ମୁଁ ଯେତେବେଳେ ବିଦାୟ ନେବା ପାଇଁ ଉଠିଲି ସେତେବେଳେ ଡଃ ମହତାବ ନିଜେ ମୋ ସହିତ କିଛିବାଟ ଆସିବା ପରେ ପଚାରିଲେ- "ରଣଧୀରବାବୁ ମୋ ସହିତ କିଛି ବ୍ୟକ୍ତିଗତ କଥା ଥିଲା ? ନିରୋଳାରେ କିଛି କହିବା ପାଇଁ ଚାହାନ୍ତି ?" ମୁଁ ହତବାକ୍ ହୋଇଗଲି । ତାଙ୍କ ଭଳି ଜଣେ ବିରାଟ ବ୍ୟକ୍ତିତ୍ୱ ଛୋଟ ବଡ଼ କଥା ପ୍ରତି ମଧ୍ୟ ଲକ୍ଷ୍ୟ ରହିଛି । ସେ ପ୍ରକାର ଆନ୍ତରିକତା ସ୍ନେହ ଶ୍ରଦ୍ଧା ଭୂଲି ହେବନାହିଁ । ମୁଁ ବିନୟ ଭାବରେ କହିଥିଲି– କିଛି କାମ ନାହିଁ, ଆପଣଙ୍କୁ କେବଳ ଦେଖା କରିବା ପାଇଁ ଆସିଥିଲି । ମୁଁ ପ୍ରଣାମ ଜଣାଇ ଆସିଲି । ତାହାହିଁ ଥିଲା ମୋର ଡଃ ମହତାବଙ୍କ ସହିତ ଶେଷ ସାକ୍ଷାତ ।

ମୁଖ୍ୟ ସଂପାଦକ
ଜୀବନରଙ୍ଗ
ଝୋଲିରୋଡ଼, କଟକ-୨

# ସଂଗ୍ରାମୀ ମହତାବ

**ସଲିଲ ପଟ୍ଟନାୟକ**

ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ ଭଦ୍ରଖ ନିକଟ ଅଗରପଡା ଗ୍ରାମରେ ୧୮୯୯ ମସିହା ନଭେମ୍ବର ୨୧ ତାରିଖ ଦିନ ଜନ୍ମ ହୋଇଥିଲେ ସିନା, କିନ୍ତୁ ସାରା ଓଡ଼ିଶାର ମଙ୍ଗଳ କାର୍ଯ୍ୟ ନିମନ୍ତେ ନିଜର ଜୀବନକୁ ଉତ୍ସର୍ଗୀକୃତ କରିଥିଲେ । ତେଣୁ ସେ କେବଳ ଅଗରପଡାର ନୁହଁନ୍ତି — ସେ ସାରା ଓଡ଼ିଶାର ।

ଭାରତକୁ ଗୋରା ଶାସନରୁ ମୁକ୍ତ କରିବା ପାଇଁ ସେ ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁଙ୍କ ସହ ମିଶି ବ୍ରିଟିଶ ସରକାରଙ୍କ ସହ ଲଢ଼େଇ କଲେ । ବ୍ରିଟିଶ୍ ସରକାର ୧୯୪୭ ମସିହାରେ ଭାରତ ଛାଡିଯିବା ବେଳକୁ ଉତ୍କଳମଣି ଗୋପବନ୍ଧୁ, ଉତ୍କଳ ଗୌରବ ମଧୁସୂଦନଙ୍କର କାଳ ହୋଇଯାଇଥିଲା । ତେଣୁ ସ୍ୱାଧୀନତା ପୂର୍ବରୁ ଜୀବନ କାଳ ଭିତରେ ମହତାବ ଥରକୁ ଥର ଜେଲ ଯାଇ ସମୁଦାୟ ଆଠ ବରଷ କାଳ ଜେଲରେ କଟାଇ ଥିଲେ ।

ସେ ଅଗରପଡାର ବଡ ଜମିଦାରଙ୍କ ଘରେ ଜନ୍ମ ହୋଇଥିଲେ । ଲୋକେ ତାଙ୍କୁ ଅଗରପଡା ରଜା ବୋଲି କହୁଥିଲେ । କଲେଜରେ ପଢ଼ିବା ବେଳେ ସେ ଭଲ ଭାବରେ ବୁଝିଲେ ଗୋରା ସରକାର ଜମିଦାର ରାଜାମାନଙ୍କୁ ହାତ କରି ଗରିବ ଲୋକଙ୍କୁ ଦୁଃଖ ଦେଉଛନ୍ତି । ଗରିବ ଖଟିଖିଆ ଲୋକେ ଲୁହ ଲହୁ ନିଗାଡି ଖରା ବର୍ଷାରେ ଯାହା ଅମଳ କରନ୍ତି ଜମିଦାର ମହାଜନଙ୍କୁ ସୁଖରେ ରଖି, ଗୋରା ସରକାର ତାଙ୍କଠାରୁ ସେ ସବୁ ପାଉଣା ହିସାବରେ ନେଇ ଯାଉଛନ୍ତି । ତେଣୁ ତାଙ୍କ ଜୀବନର ସ୍ୱପ୍ନ ରାମ ରାଇଜ ଥାପି, ଗରିବ, ପତିତ, ଶୋଷିତ ଲୋକଙ୍କୁ ସୁଖରେ ରଖିବା ପାଇଁ ଲୋକେ ତାଙ୍କୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ହିସାବରେ ବାଛିଲେ ।

ଓଡ଼ିଶାର ରାଜାମାନେ ମିଶି ଓଡ଼ିଶା ବାହାରେ ସ୍ୱାଧୀନ ଭାବରେ ରହିବେ ବୋଲି ମସୁଧା କରୁଥିଲେ । ମହତାବ ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀଙ୍କ ସହ ମିଶି ମସୁଧା କଲେ । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କୁ ଡକାଇ ଆଣି

କଟକରେ ସଭା କଲେ। କିନ୍ତୁ ମହତାବ ବାବୁ ତାଙ୍କର ବୁଦ୍ଧି କୌଶଳ ଦ୍ୱାରା କେତେକ ରାଜାଙ୍କୁ ଲୋଭ ଦେଖାଇ ଓଡ଼ିଶା ସଙ୍ଗରେ ମିଶିବା ପାଇଁ ରାଜି କରାଇଲେ। ସେମାନଙ୍କ ଠାରୁ ଓଡ଼ିଶା ସାଙ୍ଗରେ ମିଶିବା ରାଜିନାମାରେ ଦସ୍ତଖତ କରାଇ ଛଅଟି ଜିଲ୍ଲାରୁ ତେରଟି ଜିଲ୍ଲା କଲେ। ବୃହତ୍ ଓଡ଼ିଶାର ପ୍ରାଣ ପ୍ରତିଷ୍ଠା କଲେ।

ଡକ୍ଟର ମହତାବ ବନ୍ଧବାଡ଼ି ତିଆରି କରୁଥିବା ଓ ସେ ବିଷୟରେ ଜାଣିଥିବା ଇଂଜିନିୟର ମାନଙ୍କ ସହ ଆଲୋଚନା କରି ଶହେ କୋଟି ଟଙ୍କା ଖର୍ଚ୍ଚରେ ହୀରାକୁଦ ଠାରେ ଭାରତର ସବୁଠାରୁ ବଡ ବନ୍ଧ ତିଆରି କରିବା ପାଇଁ ନିଷ୍ପତି କଲେ। ବନ୍ଧ ତିଆରି ହେଲେ ହୀରାକୁଦ ମୁଣ୍ଡରେ ଥିବା ବହୁ ଅଞ୍ଚଳ ପାଣିରେ ବୁଡିଯିବ। ଗାଁ, ଗଣ୍ଡା, ଚାଷଜମି, ନିଶ୍ଚିହ୍ନ ହୋଇଯିବ। ତେଣୁ ସମ୍ବଲପୁରର ଜନସାଧାରଣ ବନ୍ଧ ନ କରାଇ ଦେବା ନିମନ୍ତେ ବଦ୍ଧ ପରିକର ହେଲେ। ହୀରାକୁଦ ହେଲେ ମହତାବଙ୍କ ମୁଣ୍ଡ ନେଇଯିବା ପାଇଁ ଧମକ ଦେଲେ। ମହତାବ ସାହସର ସହିତ ଲୋକଙ୍କ ପାଖକୁ ଗଲେ। ସଭା ସମିତି କଲେ। ବୁଦ୍ଧିଜୀବି ଓ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ବ୍ୟକ୍ତିଗତ ଭାବେ ଭେଟି ହୀରାକୁଦ ବନ୍ଧ ହେଲେ ଲାଭ କ୍ଷତିର ହିସାବ କରି ବୁଝାଇଲେ। ବଡ଼ି ଅଞ୍ଚଳର ହଜାର ହଜାର ଲୋକଙ୍କର ଅସୁବିଧା ହେବ। କିନ୍ତୁ ଲକ୍ଷ ଲକ୍ଷ ଲୋକମାନଙ୍କର ସୁବିଧା ହେବ। ସମଗ୍ର ସମ୍ବଲପୁର ଜିଲ୍ଲାରେ ତିନି ଚାରି ଲକ୍ଷ ଏକର ଜମିରୁ ବନ୍ୟା ମରୁଡି ଘୁଞ୍ଚିଯିବ। ବରଷକେ ଜମିରେ ଦୁଇ ତିନିଟା ଫସଲ ହେବ। ପାଣିରୁ ଶସ୍ତାରେ ବିଜୁଳି ମିଳିଲେ ବହୁ ଶିଳ୍ପ ସମ୍ବଲପୁର ଜିଲ୍ଲାର ଆଖପାଖ ଅଞ୍ଚଳରେ ପ୍ରତିଷ୍ଠିତ ହେବ। ଏସବୁ ବ୍ୟବସ୍ଥା ଯୋଗୁ ଶାନ୍ତିରେ ହୀରାକୁଦ ବନ୍ଧ ତିଆରି ହେଲା। ତା ଫଳରେ ସମ୍ବଲପୁର ଜିଲ୍ଲା ଓଡିଶାରେ ସବୁଜ ବିପ୍ଳବ ଘଟାଇଲା।

ବରଗଡ ସିମେଣ୍ଟ କାରଖାନା, ହୀରାକୁଦ ଆଲୁମିନିୟମ କାରଖାନା ଇତ୍ୟାଦି ଅନେକ ଶିଳ୍ପ ସମ୍ବଲପୁରରେ ମୁଣ୍ଡ ଟେକିଲା। ମାଟିତଳ ପାଣିକୁ ଉଠା ଜଳସେଚନ ଯୋଜନା ଦ୍ୱାରା ଜମିକୁ ଜଳ ଯୋଗାଇ ଦେବା ସ୍ୱପ୍ନକୁ ରୂପ ଦେବାରେ ସେ ଅଗ୍ରଣୀ ହେଲେ। ସେ ଭାଗଚାଷୀ ଆଇନ ଓ ମହାଜନ ଆଇନ କରି ଚକ୍ରବୃଦ୍ଧି ସୁଧ ଆଦାୟ କରି ପାରିବେ ନାହିଁ ବୋଲି ନିଷେଧ କଲେ।

ଓଡ଼ିଶାର ରାଜଧାନୀ କଟକରେ ଥିଲା। ଗୋଟିଏ ପାଖରେ କାଠଯୋଡି ନଦୀ, ଅପର ପକ୍ଷରେ ମହାନଦୀ। ଲୋକ ସଂଖ୍ୟା ବଢ଼ି ବଢ଼ି ଯାଉଥିଲା। ରାଜ୍ୟର ନେତାଙ୍କ ଭିତରୁ କିଏ ଚାହୁଁଥିଲେ ଗଞ୍ଜାମର ରଙ୍ଗେଇଲୁଣ୍ଡା, କିଏ କହୁଥିଲେ ବାଲେଶ୍ୱର, କିଏ ବା ଜିଦ୍ ଧରି ବସିଥିଲେ ଅନୁଗୁଳରେ ନୂଆ ରାଜଧାନୀ ତିଆରି ହେଉ। ଲୋକଙ୍କ ସାଙ୍ଗରେ ବହୁ ଆଲୋଚନା ଡଃ ମହତାବ କଲେ। ଗଣତନ୍ତ୍ରରେ ବିଶ୍ୱାସ କରୁଥିବା ମହତାବ ଧୈର୍ଯ୍ୟ ଧରି ଭୁବନେଶ୍ୱର ରାଜଧାନୀ ପାଇଁ ଉପଯୁକ୍ତ ସ୍ଥାନ ବୋଲି ଲୋକଙ୍କୁ ବୁଝାଇଲେ। ଭୁବନେଶ୍ୱରରେ ରାଜଧାନୀ କଲେ ସୁବିଧା କଣ, ଅସୁବିଧା କଣ ଆଲୋଚନା କଲେ। ଶେଷରେ ନିଷ୍ପତ୍ତି ନେଲେ, ଭୁବନେଶ୍ୱରରେ ହିଁ ରାଜଧାନୀ ହେବ। ଶେଷ ନିଷ୍ପତ୍ତି ଶୁଣାଇବା ସଙ୍ଗେ ସଙ୍ଗେ ଓଡ଼ିଶାର ବିଧାନ ସଭା ଘର ତିଆରି ନକରି ଭୁବନେଶ୍ୱରରେ ଥିବା ଗୋଟିଏ ଗୋଦାମ ଘରକୁ ସାମାନ୍ୟ ପରିବର୍ତ୍ତନ କରାଇ ବିଧାନ ସଭା ଅଧିବେଶନ କରାଇଲେ। ତାଙ୍କର ନିର୍ଭୀକ, ଫଳପ୍ରଦ ଉଦ୍ୟମ ଯୋଗୁ ସାରା ଭାରତ ବର୍ଷରେ ନୂଆ ରାଜଧାନୀ ଭୁବନେଶ୍ୱର ଏକ ଆଦର୍ଶ ରାଜଧାନୀ ହୋଇ ଉଠିଛି।

ମହତାବ ଚିନ୍ତା କଲେ ଶହ ଶହ ଲୁଗାକଳ ଅନ୍ୟ କେତେକ ରାଜ୍ୟରେ ଥିବା ବେଳେ ଓଡ଼ିଶାରେ ଗୋଟିଏ ହେଲେ ଲୁଗାକଳ ନାହିଁ। ତେଣୁ ବିଚାର କରି ଚଉଦ୍ୱାରରେ ଏକ ଲୁଗାକଳ କରିବାର ନିଷ୍ପତ୍ତି ନେଲେ। ଅନୁମତି ପାଇଁ ମୁଖ୍ୟମନ୍ତ୍ରୀ ମହତାବ୍ ଯେତେବେଳେ କେନ୍ଦ୍ର ସରକାରଙ୍କୁ ଲେଖିଲେ କେନ୍ଦ୍ର ସରକାର ନାହିଁ କରିଦେଲେ। ତାଙ୍କର ନିର୍ଭୀକତା ଓ ଓଡ଼ିଆ ଲୋକଙ୍କର ଆର୍ଥିକ ଅବସ୍ଥାକୁ ସୁଧାରିବା ପାଇଁ ତାଙ୍କର ଆତ୍ମୀୟତାକୁ କେନ୍ଦ୍ର ସରକାର ଗ୍ରହଣ କଲେ। ଫଳରେ ଚଉଦ୍ୱାରଠାରେ ଏକ ଲୁଗାକଳ ବସିଲା।

ତାଙ୍କରି ଦୂରଦୃଷ୍ଟି ଓ ବିଚାର ଉଦ୍ୟମ ଫଳରେ ଓଡିଶାରେ ହଜାର ହଜାର ଉଚ୍ଚ ଇଂରାଜି ବିଦ୍ୟାଳୟ, ହଜାର ପାଖାପାଖି କଲେଜ ଓ ଚାରିଗୋଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଛି। ନାରୀ ଶିକ୍ଷାର ପ୍ରସାର ପାଇଁ ତାଙ୍କରି ଉଦ୍ୟମରେ ଶୈଳବାଳା ମହିଳା ମହାବିଦ୍ୟାଳୟଠାରୁ ଆରମ୍ଭ କରି ବହୁ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସାଙ୍ଗକୁ ନାରୀ ଶିକ୍ଷା ପାଇଁ ମହାବିଦ୍ୟାଳୟ ସବୁ ସ୍ଥାପିତ ହୋଇ ତାଙ୍କରି ସ୍ୱପ୍ନ ଆଜି ସଫଳ ହୋଇପାରିଛି।

ସଂଗ୍ରାମୀ ମହତାବ ମାତୃ ଭାଷାରେ ସବୁ ଦିଗରୁ ଉନ୍ନତି ଘଟାଇବାରେ

ଶେଷ ଜୀବନ ପର୍ଯ୍ୟନ୍ତ ପ୍ରାଣ ଦେଇ ଉଦ୍ୟମ କରୁଥିଲେ। ଓଡିଶା ଜାତିର ଉନ୍ନତି କରିବା ପାଇଁ ଓଡିଶାର ଦ୍ୱିତୀୟ ଦୈନିକ କାଗଜ ପ୍ରଜାତନ୍ତ୍ରର ପ୍ରାଣ ପ୍ରତିଷ୍ଠା କଲେ। ସ୍ୱାଧୀନତା ସଂଗ୍ରାମ ବେଳେ ବାଲେଶ୍ୱରରୁ ବ୍ୟାସକବି ଫକିର ମୋହନଙ୍କ ଦାୟାଦ ରୂପେ ଓଡ଼ିଆ ଭାଷାର ଉନ୍ନତି ପାଇଁ ପ୍ରଜାତନ୍ତ୍ର ପ୍ରକାଶ କରୁଥିଲେ। ସ୍ୱାଧୀନତା ସଂଗ୍ରାମରେ ବାରମ୍ବାର କାରାବରଣ ଏବଂ ଅହରହ ସ୍ୱାଧୀନତା ସଂଗ୍ରାମର ବହୁବିଧ କାମଯୋଗୁଁ ଏଣୁ ବାଲେଶ୍ୱରରୁ ପ୍ରକାଶ ପାଉଥିବା ପ୍ରଜାତନ୍ତ୍ର ବନ୍ଦ ହୋଇଗଲା। ଭାରତ ସ୍ୱାଧୀନ ହେବା ପରେ 'ପ୍ରଜାତନ୍ତ୍ର'କୁ ଏକ ବଳିଷ୍ଠ ନିର୍ଭୀକ ଖବରକାଗଜ ରୂପେ ସେ ପୁନଃ ପ୍ରତିଷ୍ଠା କରି ଯାଇଛନ୍ତି। ୧୯୪୭ରୁ ଏହା କଟକରୁ ନିୟମିତ ପ୍ରକାଶ ପାଉଛି। ପ୍ରତିଭାପନ୍ନ ଯୁବକମାନଙ୍କୁ ଉତ୍ସାହ ଦେଇ ନିଜ ସଂପାଦନାରେ ପ୍ରକାଶିତ 'ଝଙ୍କାର'ରେ ନୂଆ ଲେଖକଙ୍କ କବିତା, ଗଳ୍ପ, ରମ୍ୟ ରଚନା, ପ୍ରବନ୍ଧ ପ୍ରଭୃତି ଛପାଇ ବହୁ ସୁଲେଖକ ସୃଷ୍ଟି କରିବାରେ ସେ ସମସ୍ତଙ୍କୁ ବଳି ପଡିଛନ୍ତି।

ମାତୃଭାଷାର ଉନ୍ନତି ପାଇଁ କଟକ 'ପ୍ରଜାତନ୍ତ୍ର' ହତା ଭିତରେ ସେ ବିଷୁବ ମିଳନ ବା ବିଷୁବ ମେଳା ବସାଇଲେ। ସେଠି ଲେଖକମାନେ ଏକଜୁଟ ହୁଅନ୍ତି। ଭଲ ଭଲ ଲେଖା ପାଇଁ ଲେଖକଙ୍କୁ ପୁରସ୍କାର ଓ ମାନପତ୍ର ଦିଆଯାଏ।

ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ। ୧୯୫୦ ମସିହା ପରେ ସ୍ୱାଧୀନ ଭାରତର ପ୍ରଥମ ମୁଖ୍ୟମନ୍ତ୍ରୀ। କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ସେ ପ୍ରଥମ ଓଡିଆ ମନ୍ତ୍ରୀ। ପ୍ରଥମ ଓଡ଼ିଆ ରାଜ୍ୟପାଳ। ସର୍ବୋପରି ସେ ଓଡିଆ ଜାତିର ଶୁଭଚିନ୍ତକ। ଓଡିଆ ଜୀବନର ପ୍ରତ୍ୟେକ ଦିଗକୁ ଗୌରବମୟ କରିବା ପାଇଁ ତାଙ୍କ ଜୀବନ ବ୍ୟାକୁଳ ଥିଲା। ସେହି ବ୍ୟାକୁଳତାରେ ରାଜନୀତିରୁ ଅବସର ନେଇ ନିଜକୁ ଓଡିଆ ଜାତିର ମୁରବୀ ମନେ କରି 'ପ୍ରଜାତନ୍ତ୍ର'ରେ 'ଗାଁ ମଜଲିସ୍' ଲେଖିବାରେ ବେଶୀ ସମୟ ଦେଲେ।

ଭାରତର ସ୍ୱାର୍ଥ ଦୃଷ୍ଟିରୁ ଓଡ଼ିଶାବାସୀଙ୍କୁ ତ୍ୟାଗ କରିବାକୁ ସେ ଉତ୍ସାହ ଦେଉଥିଲେ। ଅନବରତ ବିଭିନ୍ନ ସମସ୍ୟା କଥା ଚିନ୍ତା କରି ସେ ବିଷୟ 'ଗାଁ ମଜଲିସ୍'ରେ ଲେଖି ଲୋକଙ୍କୁ ଚେତାଉଥିଲେ, ସରକାରଙ୍କୁ ପରାମର୍ଶ ଦେଉଥିଲେ ଏବଂ ଗୋଟିଏ କଥାରେ କହିଲେ ସେ ଉତ୍କଳ କେଶରୀ। କେଶରୀ ଯେପରି ନିର୍ଭୀକ, ସେହିପରି ବୟସରେ ବୃଦ୍ଧ ହେଲେ ମଧ୍ୟ ଅସୀମ ସାହସ ଓ ଆନ୍ତରିକତା ନେଇ ଲୋକଙ୍କ ମଙ୍ଗଳ ପାଇଁ ଦିବା ନିଶି କାର୍ଯ୍ୟ କରୁଥିଲେ।

ତେଣୁ ଆଜି ଡଃ ମହତାବଙ୍କ ୯୬ତମ ଜୟନ୍ତୀ ପାଳନ କଲାବେଳେ ତାଙ୍କର ସେ ଆଦର୍ଶ ଅନୁସରଣ କରିବାକୁ ମଧ୍ୟ ଆଗ୍ରହ ପ୍ରକାଶ ପାଇବା ଦରକାର। ଯେ ଇତିହାସ ଲେଖିଛନ୍ତି, ଇତିହାସ ସୃଷ୍ଟି କରିଛନ୍ତି, ଇତିହାସର ପୁରୁଷ ଭାବରେ ଅଗ୍ରଗତି ଲାଗି, ସେ ନିର୍ଦ୍ଦେଶ କରିଥିବା ପଥ, ନିଶ୍ଚୟ ଅନୁସରଣୀୟ। ଆଜି ଅବଶ୍ୟ ଡଃ ମହତାବ ଆମ ମଧ୍ୟରେ ସଶରୀରେ ଉପସ୍ଥିତ ନାହାନ୍ତି। ମାତ୍ର ତାଙ୍କ ପ୍ରସାରିତ ହସ୍ତ ଏବେବି ଆମର ମଥା ଉପରେ କଲ୍ୟାଣ ବର୍ଷି ଚାଲିଛି। ଆଲୋକ ଲିଭି ଯାଇଥିଲେ ମଧ୍ୟ ଜ୍ୟୋତି ପଥର ସନ୍ଧାନ ଦେଉଛି। ସେ ପଥରେ ଚାଲିବା ଲାଗି ଆଗ୍ରହ, ସାହସ ଓ ଅନୁପ୍ରାଣତା ପ୍ରକାଶ ପାଉ।

(ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ,
ରାଉରକେଲା)



# ମହତାବ ବାବୁ

## ସୁରେନ୍ଦ୍ର ଦ୍ୱିବେଦୀ

ଆମେ ହରେକୃଷ୍ଣ ମହତାବଙ୍କୁ ମହତାବ ବାବୁ ବୋଲି ଡାକୁଥିଲୁ। ବହୁବର୍ଷ କାଳ ବିଭିନ୍ନ କ୍ଷେତ୍ରରେ ଏକ ସାଙ୍ଗରେ କାର୍ଯ୍ୟକରୁଥିବାରୁ ସହୃଦୟତା ବଢ଼ିଥିଲା। ତାଙ୍କର ଥିଲା ଏକ ସମ୍ବେଦନଶୀଳ ହୃଦୟ।

ଆମ ମାନଙ୍କ ଭିତରେ ସେ ଥିଲେ ଅତ୍ୟନ୍ତ ପ୍ରତ୍ୟୁତ୍ପନ୍ନମତି କୁଶଳୀ ରାଜନୀତିଜ୍ଞ। ତାଙ୍କର ପ୍ରଭାବଶାଳୀ ବ୍ୟକ୍ତିତ୍ୱ ସବୁ କ୍ଷେତ୍ରରେ ଫୁଟି ଉଠିଥିଲା। ଓଡ଼ିଶା ଓ ଭାରତର ରାଜନୀତିରେ ତାଙ୍କର ଦକ୍ଷତା ପ୍ରକଟିତ ହୋଇଥିଲା। ଓଡିଆ ରାଜନୀତିଜ୍ଞଙ୍କ ଭିତରୁ ତାଙ୍କ ଭଳି ଏପରି ଏକ ପ୍ରତିଷ୍ଠାବାନ ବ୍ୟକ୍ତି କେହି ନାହାଁନ୍ତି ବା ହେବାପରି ଦିଶୁନାହିଁ।

ତାଙ୍କର ମହାନ୍ ବ୍ୟକ୍ତିତ୍ୱ ଓଡିଶାର ଜନମାନସକୁ ପ୍ରଭାବିତ କରିଥିଲା। ସେ ନିଜର ରାଜନୈତିକ ଜୀବନ ନିଜର ସାଙ୍ଗଠନିକ ଓ କର୍ତ୍ତବ୍ୟନିଷ୍ଠ କର୍ମଯୋଗୁଁ ନିଜେ ଗଢିଥିଲେ ଏବଂ ରାଜନୀତିର ପୂରଭାଗକୁ ଆସିପାରିଥିଲେ।

ମୁଁ ତାଙ୍କ ବିଷୟରେ ଯେତେକଥା ଜାଣେ, ବ୍ୟକ୍ତିଗତ ବା ରାଜନୈତିକ, ବର୍ଣ୍ଣନା କଲେ ଏକ ପୋଥି ହେବ। ସେଥିରୁ ଗୋଟିଏ ଦୁଇଟି କଥା ଏଠାରେ ଉଲ୍ଲେଖ କରୁଛି ଯଦ୍ୱାରା ତାଙ୍କର ରାଜନୈତିକ କୌଶଳ ଓ ନିପୁଣତା ପ୍ରତିପାଦିତ ହେବ।

ରମାଦେବୀ ଓ ଗୋପବନ୍ଧୁ ଚୌଧୁରୀ 'ଘୋଡା' ବୋଲି ଡାକୁଥିଲେ। 'ଘୋଡା' ଥରେ ଦୌଡିଲେ କେହି ରୋକି ପାରିବ ନାହିଁ। ମହତାବ ବାବୁ ପ୍ରକୃତରେ ଘୋଡା ପରି ମୂଳରୁ ଶେଷ ପର୍ଯ୍ୟନ୍ତ ରାଜନୈତିକ ଜୀବନରେ ଦୌଡିଛନ୍ତି। କେହି ତାଙ୍କୁ ପଥରୋଧ କରିପାରିନାହିଁ। ସବୁ ରାଜନୈତିକ ଖେଳରେ ସେ ଯଶଲାଭ କରିଛନ୍ତି। ଆମ୍ଭେ ତାଙ୍କର ସାଙ୍ଗସାଥୀମାନେ ବରାବର କହୁଥିଲୁ "ମହତାବ ବାବୁ ଯାହା କହନ୍ତି ବା କରନ୍ତି, ତାହା ବିଭିନ୍ନ ଦିଗକୁ ପ୍ରୟୋଗ ହୁଏ।" ଅର୍ଥାତ୍ ତାଙ୍କର ଲକ୍ଷ ଯଦି ଥାଏ କେଉଁ ବନ୍ଧୁ ଉପରେ ଆକ୍ରମଣ କରିବା ପାଇଁ, ତେବେ ସେ ଏପରି ଶବ୍ଦ ବା ବାଣ ପ୍ରୟୋଗ କରନ୍ତି ଯଦ୍ୱାରା ତାଙ୍କ ଉପରେ ପ୍ରତ୍ୟକ୍ଷ ଆକ୍ରମଣ ନ ହୋଉ ପରୋକ୍ଷ

ଭାବରେ ତାଙ୍କୁ ଆଘାତ କରେ। ଏହି କୌଶଳ ଅନ୍ୟ ରାଜନୈତିଜ୍ଞଙ୍କ ପାଖରେ ବିରଳ ଥିଲା।

ସେ ଏକ ପ୍ରକାର ସକଳ ବିଦ୍ୟାରେ ନିପୁଣ ଥିଲେ। ରାଜନିତୀ କଥା ନ କହିବା ଭଲ। ୧୯୫୬ ମସିହାରେ ସେ ବମ୍ବେର ଗଭର୍ନର ଥିଲେ। ମାତ୍ର ତାଙ୍କର ତୀକ୍ଷ୍ଣଦୃଷ୍ଟି ରହିଥିଲା ଓଡ଼ିଶା ରାଜନୀତିରେ। ସେ ଛଟପଟ ହେଉଥିଲେ ଓଡ଼ିଶାକୁ ଫେରିବା ପାଇଁ। ଯଦିଓ ନବକୃଷ୍ଣ ଚୌଧୁରୀ ତାଙ୍କର ବହୁକାଳର ରାଜନୀତିର ସାଥି ସେ ବିଚାର କଲେ ନବବାବୁଙ୍କ ନେତୃତ୍ୱରେ ଓଡ଼ିଶାର ରାଜନୀତି ତଳକୁ ଯାଉଛି ଏବଂ କଂଗ୍ରେସର ପ୍ରବଳ କ୍ଷତି ହେଉଛି। ସେ ବନ୍ୟା ସମୟରେ ଓଡ଼ିଶା ଗ୍ରସ୍ତ କରି ଯାହା ଅନୁଭବ କଲେ, ପ୍ରକାଶ୍ୟ ବିବୃତ୍ତିରେ ତା'ର ସମାଲୋଚନା କଲେ। ମୋଟାମୋଟି ସେ ଦାବି କଲେ ଯେ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରୀ ହେଉ। ନିଜର ବନ୍ଧୁ ଓ କଂଗ୍ରେସର ଶାସନ ବିରୁଦ୍ଧରେ ଏପରି ସମାଲୋଚନା ଏକ ବିଗ୍ରହିତ କାର୍ଯ୍ୟ ବୋଲି ବିଚାର କରାଗଲା। ଏଥିପାଇଁ କେନ୍ଦ୍ର ସରକାରଙ୍କୁ ସମ୍ମତ କରାଇବା ଥିଲା ଏକ କଠିନ କାର୍ଯ୍ୟ।

ସେ ଏଥିଲାଗି ବିଭିନ୍ନ କୌଶଳ ପ୍ରୟୋଗ କଲେ। ଏବଂ ନାନା ଭାବରେ ତାଙ୍କ ପକ୍ଷ ସମର୍ଥନ କରିବା ନିମନ୍ତେ ସମର୍ଥନ ଲୋଡ଼ିଲେ। ମୁଁ ସେତେବେଳେ ପାର୍ଲାମେଣ୍ଟର ମେମ୍ବର ଥାଏ ଏବଂ ମୋ ଅସୁସ୍ଥତା ହେତୁ ମୋର ବାସସ୍ଥଳୀ ୨୧ ନମ୍ବର କ୍ୟାନିଙ୍ଗ୍ ଲେନ୍‌ରେ ଡାକ୍ତର ପରାମର୍ଶରେ ବିଛଣାଗତ ହୋଇଥାଏ। ହଠାତ୍ ମୋତେ ଟେଲିଫୋନ୍ ମିଳିଲା ଯେ ବମ୍ବେ ଗଭର୍ନର ଆସୁଛନ୍ତି। ବିଛଣା ପାଖରେ ବସି ମୋତେ କହିଲେ ନବବାବୁ ତୁମର ଓ ମୋର ଅନ୍ତରଙ୍ଗ ବନ୍ଧୁ। ମାତ୍ର ତାଙ୍କର ଅକ୍ଷମତାକୁ ଆଉ ପ୍ରଶ୍ରୟ ଦିଆଯାଇ ପାରିବ ନାହିଁ। ଓଡ଼ିଶା ଲୋକେ ବଡ ଦୁର୍ଗତି ଭିତରେ ଗତି କରୁଛନ୍ତି। ତହିଁରୁ ରକ୍ଷା ପାଇବାର ଏକମାତ୍ର ଉପାୟ ହେଉଛି ରାଷ୍ଟ୍ରପତି ଶାସନ। ମୋତେ ଅନୁରୋଧ କଲେ ତୁମ୍ଭେ ଏହି ସଂକ୍ରାନ୍ତରେ ଏକ ବିବୃତ୍ତି ଦିଅ। ମୁଁ ତାଙ୍କ କୌଶଳ ବୁଝି ପାରିଲି। ମୋ ବିବୃତ୍ତି ଦ୍ୱାରା ତାଙ୍କର ଦାବୀ ସୁଦୃଢ଼ ହେବ। ତେଣୁ ମୁଁ ବିଷୟଟି ଅନ୍ୟ ଦିଗରେ ଚାଳନା କରିଦେଲି ଓ ତାଙ୍କୁ ନମ୍ରତା ସହିତ କହିଲି ମୁଁ ଦୁଇମାସ ହେଲା ବେମାର ଅଛି ଓ ଓଡ଼ିଶାର ରାଜନୈତିକ ଖବର କିଛି ରଖିନାହିଁ। ତେଣୁ ନୈତିକତା ଦୃଷ୍ଟିରୁ

ମୋର ବିବୃତ୍ତି ଦେବା ସମ୍ଭବ ନୁହେଁ। ସେ କିନ୍ତୁ ଖୁବ୍ ଖୁସୀ ହେଲେ ନାହିଁ ଏବଂ କହିଗଲେ ଆମକୁ ଭାବପ୍ରବଣତା ଛାଡି ନିଜର ସାଙ୍ଗସାଥୀ ଯିଏ ହେଉନା କାହିଁକି ନିର୍ଭିକ ଭାବରେ ମତ ପ୍ରକାଶ କରିବା ଉଚିତ। ଏହା ତାଙ୍କର ରାଜନୈତିକ କୌଶଳର ଏକ ଦିଗ।

ଆହୁରି ଏକ ଘଟଣା ଅତି କୌତୁହଳମୟ ଏବଂ ବ୍ରିଟିଶ୍ ସରକାରର କବଳରୁ ରକ୍ଷା ପାଇବା ନିମନ୍ତେ ତାଙ୍କର ଚତୁର ନୀତି। 'ରଣପୁର'ରେ ବଦେଲ୍ ଗେଟ୍ ହତ୍ୟା ବେଳେ ବ୍ରିଟିଶ ସରକାରର ପୁଲିସ ତାଙ୍କୁ ସେଥିରେ ଲିପ୍ତ କରିବା ନିମନ୍ତେ ଚେଷ୍ଟିତ ଥିଲେ। ଉକ୍ତ ରାତ୍ରିରେ ସେ ରଣପୁର ଯାଇ ଲୋକମାନଙ୍କୁ ଭୟରେ ଆତୁର ନ ହେବା ନିମନ୍ତେ ନିବେଦନ କରିଥିଲେ। ବଦେଲ୍ ଗେଟ୍ ହତ୍ୟା ସଂକ୍ରାନ୍ତରେ ତା'ର କୌଣସି ସଂପର୍କ ନ ଥିଲା। କିନ୍ତୁ ବ୍ରିଟିଶ ସରକାର ମଉକା ପାଇଲେ ତାଙ୍କୁ ସେଥିରେ ଜଡିତ କରିବା ନିମନ୍ତେ। ସେ ତହିଁର ସୁରାଖ ପାଇ ରାତାରାତି ତାଙ୍କର ଛୋଟ 'ଫୋର୍ଡ଼' ଗାଡିରେ ଚାଲି ଆସିଲେ। ରାତ୍ରି ପ୍ରାୟ ୩ଟା/୪ଟା ବେଳେ ଆସି ମୋର ତେଲେଙ୍ଗାବଜାର ସ୍ଥିତ ବାସସ୍ଥଳୀରେ ପହଞ୍ଚି ଡକାଇ ପଠାଇଲେ ଏବଂ ଘଟଣାବଳୀ ବର୍ଣ୍ଣନା କଲେ। ସେହି ରାତିରେ ସେ ଦୁଇଜଣ ପୁଲିସ୍ ଅଫିସରଙ୍କୁ ମଧ୍ୟ ଭେଟିଲେ। ଏସବୁ କରାଗଲା ପୋଲିସର ଅଭିଯୋଗକୁ ଅପ୍ରମାଣ କରିବା ନିମନ୍ତେ। ସେହି ରାତିରେ ସେ ଯେତେବେଳେ ଦୁଇ ତିନି ଜାଗାରେ କଟକରେ ଉପସ୍ଥିତ ଥିଲେ, ସେ ରଣପୁରରେ କିପରି ହତ୍ୟା ଘଟଣାରେ ସଂପୃକ୍ତ ହୋଇପାରନ୍ତି। ପୁଲିସ୍ ଆଉ ସେଥିରେ ତାଙ୍କୁ ଜଡିତ କରିବା ନିମନ୍ତେ ସମର୍ଥ ହେଲା ନାହିଁ।

ସେ ଏହିପରି ଥିଲେ ଜଣେ ସଫଳ ରାଜନୀତିଜ୍ଞ ଏବଂ ଦୂରଦୃଷ୍ଟିସଂପନ୍ନ ବ୍ୟକ୍ତିତ୍ୱ। ମୁଁ ତାଙ୍କର ବଂଧୁ ଓ ରାଜନୈତିକ ବିରୋଧୀ ଭାବରେ ତାଙ୍କର ସବୁ କାର୍ଯ୍ୟକୁ ସମର୍ଥନ କରୁ ନ ଥିଲି, ମାତ୍ର ତାଙ୍କର ବିଜ୍ଞତା ରାଜନୈତିକ କୌଶଳ ଓ ଓଡ଼ିଶାର ସଂସ୍କୃତି ବିଶେଷ ଭାବରେ ସାହିତ୍ୟ ଓ କଳା ବିଷୟରେ ଅବଦାନ ଅଲୌକିକ। ସେଇଥିଲାଗି ଆମେ ସମସ୍ତେ ତାଙ୍କୁ ପ୍ରଶଂସା କରୁଥିଲୁ ଏବଂ ତାଙ୍କ ବ୍ୟକ୍ତିତ୍ୱର ଗାରିମାକୁ ସ୍ୱୀକାର କରୁଥିଲୁ।

ନୂଆଦିଲ୍ଲୀ, ୨୩/୧୨/୯୫



# MAN OF DESTINY

**Narayan Prasad Das**

Dr. Harekrushna Mahtab is no more amongst us. All mortal beings are to pass away one day or another. That is the law of nature. But there are some, who inspite of the absence of physical presence, continue to live through their words and deeds. Dr. Harekrushna Mahtab belonged to those rare and select group of people. probably, had he been born elsewhere outside Orissa, he would have been catapulated into far more important positions in the national and public life of the Country.

For the present generation, memories of late Dr. Mahtab might not hold much interest and attention. It is said that public memory is short. But there is no doubt that in the annals of history of modern Oriya nationalism and in the attempts that were made in the middle period of the present century to firmly establish the Orissan identity in the national mainstream, Dr Mahtab's name will be written in golden letters. When the people of the state were suffering in darkaness, he not only instilled courage and confidence in them, but also proved beyond doubt that this ancient land of warriors and artisans could provide leadership to the nation. After the exit of Utkal Gourab Madhusudan Das and untimely demise of Utkalmani Pandit Gopabandhu Das, it was only Dr. Mahtab from among the Oriyas who could be counted as one in the galaxy of national leaders. Excepting late Pandit Nilakantha Das, none of the leaders from Orissa, in those critical years, were in the national reckoning.

It is well known that Dr. Mahtab was not a blue eyed boy of Pandit Jawaharlal Nehru. Rather in the internal leadership struggle in the Congress Party Dr. Mahtab was precieved to be close to Sardar Ballavbhai Patel. The removal of Sardar

Patel from the national scene in the early period of independence probably acted as a deterrent to the natural culmination of Dr. Mahtab's rise in national politics. Later on this was cleverly exploited by Biju Patnaik to dethrone Dr. Mahtab from state leadership in the early sixties. It is now a part of history that after this setback, although Dr. Mahtab bounced back with renewed vigour in the State politics in the late sixties, he was not the same force again and could not command the top position as before. It is one of the its of history as to wheather it would have been possible if Sardar Patel been alive.

In this context, it is interesting to mention here that in the light of conflict between Dr. Mahtab and Biju Patnaik for the control of the fortunes of Congress party in the state in the late fifties and early sixties, when under the leadership of the later, the Congress party for the first time secured absolute majority in the 1961 mid term elections. It was rightly presumed that the political fortunes of Dr. Mahtab which was already on the downhill would further slide down and never recover. But willy, as he was, Dr. Mahtab had other plans. In his long standing service in the interest of the nation, he was accustomed to swim against the tide and was not perturbed by the sudden reversal of fortune. A year after Biju Patnaik's unprecedented success in the polls, in the year 1962, Dr. Mahtab was elected uncontested to the Lok Sabha from Angul parliamentary constituency. This was a classic instance of the love and affection in which the people of the State held him and it also served to remind the central leadership that the unconquered spirit in Dr.Mahtab was not lost and he could not be taken for granted. Perhaps the central leadership drew correct lesson from this episode as soon thereafter Dr. Mahtab was elected as the Deputy leader of Congress parliamentary party in the Lok Sabha where Pandit Jawaharlal

Nehru was the leader. No other leader from Orissa either before or after has occupied this all important position.

It is also a fact that Dr. Mahtab has been maligned more than he deserved. This was probably because of the fact that in the milleu in which he worked had more people of lesser talent who could not stand upto his personality and therefore made attempts to defame him through false campaign, deceit and calumny. One bright example of this type of under hitting comes to my mind. In my days of adolescence, I often heard from several leaders holding respectable position in public life that it was Dr. Mahtab who levelled allegations of misappropriation of flood relief funds against Utkalmani Gopabandhu Das. Many of my generation believed in this without verifying facts and accordingly did not held Dr. Mahtab in the high esteem he deserved. But nothing can be farther from truth than this. There is evidence to show that another eminent parliamentarian from Orissa was behind this allegation and not Dr. Mahtab. This is one example to show how Dr. Mahtab was the target of villification attempts by those who looked like pygmies before his personality and consequently were jealous of him.

Dr. Mahtab combined many rare qualities in him. He was a politician closer to the masses and therefore could read their pulse instantly. He was a natural leader as from the comforts of a luxurious life he voluntarily drifted towards the path of struggle and suffering under the inspiring leadership of Gandhiji. He was a scholar extraordinary, a historian of repute and a melliflous writer who could transform great ideas into simple words within a small framework. He was a patron of arts, literature, culture and religion. Apart from Pandit Gopabandhu Das and Pandit Nilakantha Das, it was only Dr. Mahtab who influenced and moulded Oriya journalism in its infant stage. Besides he was the only one who spread

the message of art, literature and culture through the medium of Journalism. It is no secret that he was the first and foremost to spot and recognise talent and that those who are occupying important position in the administrative, literary and sports circles of the state today would not have achieved the eminence, but for the timely encouragement and assistance provided by him bears testimony to this fact.

It is a matter of great regret that enough is not being done by the Govt. of Orissa to commemorate the memory of this selfless crusader for just cause. It is high time that those in power pay attention to this burning desire among the people of the State.



# ଅର୍ଘ୍ୟଥାଳି

ଶ୍ରୀ ନରେନ୍ଦ୍ର କୁମାର ପ୍ରଧାନ

ପଥର ହେଲକି ପଥେ ଠାକୁର
ପଥିକ ଡାକକୁ ନ କର ଗିର
ପଥହରା କରି ପାନ୍ଥ ନିକର
ପାଥେୟ ନ ହୁଅ ହୃଦ କନ୍ଦର
ଏ ଦୀନେ ଉଦ୍ଧରି ଧର ଯେ,
ପଣତ କାନିରେ ଆଶୀଷ ପୟରେ ଦେଇ ଦୁଃଖ କର ଦୂରଯେ ।।

ତୁମେ ତ ଦେଲ ଏ ଜୀବେ ପରାଣ
ସଞ୍ଜିବନୀ ମନ୍ତ୍ରେ ଜୀବନ-ଦାନ
ନୟନେ ଅଂଜନ ହୃଦେ ସ୍ପନ୍ଦନ
ଭାଷା ବୋଲିବାକୁ ମୁଖେ ବ୍ୟଞ୍ଜନ
ସର୍ବାଙ୍ଗେ ହରି ଚନ୍ଦନ ଯେ,
ତୁମ ଦାନ ପାଇ ଏ ନଶ୍ୱର ଦେହ ଭୋଗିଲା ବହୁ କଷଣ ଯେ ।।

ତୁମରି ଆଦର୍ଶ ନିୟମ ବଳେ
ସତ୍ୟ ପଥେ ରହି ତୁମ ଅଞ୍ଚଳେ
ରସ ପଦାମୃତ ସରସୀ ଜଳେ
ଏ ପଙ୍କିଳ ପ୍ରାଣ ଉଦ୍ଧର ହେଳେ
ଦହଇ ଦେହ ଅନଳେ ଯେ,
ବଳ ଥାଉ ବଳହୀନ ମନ ମୀନ ବୁଡ଼ିଲା ଜଂଜାଳ ଜଳେ ଯେ ।।

ଦେଖି ଏ ଦୁନିଆଁ ନିୟମ ରୀତି
ଶୁଖିଯାଏ ମନ ମୀନ ସନ୍ତତି
ସାକ୍ଷୀ ଥାଇ ଖାଲି ଦେଖୁଛ ନିତି
ଦେଖି ହୋଇଯାଏ ଛାତି କରତି

ହେଲକି ଦାରୁ ମୂରତି ଯେ,
ବିଚାର ନ କର ପାପ ପୂଣ୍ୟ ବାରେ ଦୁଷ୍ଟରେ କର ଭକତି ଯେ ।

ଉତ୍କଳର ଯେତେ ବୀର ମୂରତି
ଜନମ ହୋଇ ଲଭିଲେ ବୀର୍ଷତି
ପଥହୁଡ଼ା ଜନେ ବଳ ଶକତି
ନୂଆଁ ରାହା ଦେଲେ ଦଳି ଅରାତି
ନିଜ ଜୀବନ ତରାଟି ଯେ
ଭୁଲିଲେଣି ଆଜି ସେ ଆଦର୍ଶ ପ୍ରୀତି ଲୁଚିଲା ତାଙ୍କ ନାଆଁଟି ଯେ ।।

ଜନମ ମାଟିର ଗୌରବ ପାଇଁ
କବିପ୍ରାଣ କାନ୍ଦୁଥିଲା ସକେଇ
କେତେ ସୁରବୀର କଲେ ଲଢାଇ
ମାତୃ ମମତାରେ କରି ବଡ଼ାଇ
ଜୀବନ ଦେଲେ ଗଡ଼ାଇଯେ,
ମାତୃଭୂମି ରକ୍ଷା ନାମେ ଆଜି ନର କରନ୍ତି କେବେ ବଡେଇ ଯେ ।।

ତୁମେ ଆଣିଥିଲ କେତେ କରମା
ଲକ୍ଷ୍ମଣ ନାୟକ, ବାଜୀ, ଧରମା,
ମଧୁ, ଗୋଦାବରୀ, କବି ସୁଷମା
ଗୋପବନ୍ଧୁ ଭଳି ବିଶ୍ୱ-କରମା
ନାହିଁ ତ ତାଙ୍କ ଉପମା ଯେ
ଫକୀର, ରାଧା, କୁନ୍ତଳା, ବୀର, ଭୀମା, ଗଙ୍ଗାଧରରେ ସୁଷମା ଯେ ।

ଉତକଳ କେଶରୀ ବୀର ମହାନ
ପୁରୁଷୋତ୍ତମକୁ କଲ ଭିଆଣ
ହରେକୃଷ୍ଣ ନାମ ସଦା ସ୍ମରଣ
ତାଙ୍କ ତେଜୋଭରା ବାଣୀ ମହାନ
ନେଲ ଛଡ଼ାଇ ଆପଣ ଯେ,
ଏ ଦୁର୍ଦ୍ଦିନେ ନର କା ଆଦର୍ଶ ନେଇ ଦେଖାଇବେ ସାଧୁପଣ ଯେ ।

ମହତାବ ଥିଲେ କଳିଙ୍ଗ-ହସ୍ତୀ
ରାଜନୀତି ସାଥେ କବି ସାରଥୀ
ତାଙ୍କ କାବ୍ୟ ପ୍ରାଣେ ଶାଶ୍ୱତ ଗୀତି
ଉତକଳ ଭାସ୍ୱର ପୂର୍ବ କୀରତି
ଜଗାଏ ନୂଆଁ ପୀରତି ଯେ,
ଦିଅ ସେ ଆଶୀଷ ନବିନ ପରଶ ଗାଇବା କଳିଙ୍ଗ ଗୀତି ଯେ ।
ତୁମେ ହେ ସାଧକ ତୁମେ ନାୟକ
ତୁମ ବୁଦ୍ଧିବଳେ ଉତକଳ ଟେକ
ବ୍ୟାପିଥିଲା ଦିନେ ସାରା ମୂଲକ
କଳିଙ୍ଗ କେଶରୀ କେଶରୀ ଡାକ
ଲୁଚିଗଲ ଅଚାନକ ଯେ,
ଚଳିଗଲ ଶେଷେ ସର୍ବହରା କରି ରାଜ୍ୟଭୂଷଣ ସ୍ତବକ ଯେ ।

ଗାନ୍ଧିନୀତି ନାମେ ହୁଏ ଦୁର୍ଗତି
ରାଜନୀତି ନାମେ ଚାଲେ ଅନୀତି
ପ୍ରୀତି ନାମ ଗୋଟି ତୁଚ୍ଛ ହେଲାଟି
ଅପ୍ରୀତିରେ ଚାଲେ ଶାସନ ରୀତି
କହିଲେ ମଂଦ ହେବଟି ଯେ,
ମତି ଗତି ଗଲା ଅଗତିରେ ମିଶି ଅସାର ସାର ହେଲାଟି ଯେ ।

ଦେଖ ଉତ୍କଳର ମହାନାୟକ !
ଆଜି ମାନବର ବୀର ଟମକ
ନାରୀ ନିର୍ଯ୍ୟାତନା ମିଥ୍ୟା ଧମକ
ଅନୀତି ପୀରତି ପରି-ପୂରକ
ସ୍ୱାର୍ଥ ସାଧନ ନାୟକ ଯେ,
ସାଜି ଲୁଣ୍ଠୁଛନ୍ତି ଦଳିତ ପରାଣ ଦେଖାଇ କେତେ ବହପ ଯେ ।

ଘାଣ୍ଟୁ ହସ୍ତେ ଦେଲ ରାଜ୍ୟ ତୁମର
ଟାଣୁଛନ୍ତି ପ୍ରାଣ ଦୀନ - ଜନର

ମଣ୍ଡୁଛନ୍ତି ଅବା ସ୍ୱୟଂ ଜନର
ଝୁଣ୍ଟୁଛନ୍ତି ମାତୃଭୂମି ଭାସ୍ୱର
ଗଣୁଛନ୍ତି ଅନ୍ୟେ ଗିର ଯେ
ମଣି ଛାଣି ପୁଣି ଗୁଣି ସାଜି ଦେଶ ଶିରୀ କଲେଣି ଅସାର ଯେ ।

ଆରତ ନାଶନ କଳା ଠାକୁର
ପଣତରେ ରଖି ଉଦ୍ଧରି ଧର
ସତ, ମିତ, ବିତ୍ତ ଦିଅ ସତ୍ୱର
ଅସତରେ ଦିଅ ଘାତ ପଥର
ମରକୁ କର ସଂହାର ଯେ,
ମୋ ଜନମ ଭୂମି ଜନନୀ ପରାଣେ କରୁଣା ଢାଳ ଅପାର ଯେ ।

# କାଳଜୟୀ ମହତାବ

ସରୋଜ ରଂଜନ ଦାଶ

ଭୁଲି ଗଲେଣି-
ଅନେକ ଗଣ ଦେବତାଙ୍କୁ,
ଅଧା ମନେ ଥିବା, ଅଧା ମନେ ନ ଥିବା,
ମୃତ୍ୟୁର ଚାଦର ଢାଙ୍କି ଶୋଇ ଯାଇଥିବା-
ସେହି ମହାପୁରୁଷ ମାନଙ୍କୁ।
କିନ୍ତୁ, — ଭୁଲି ଯାଇନି, ଓଡ଼ିଆ ଜାତି
ସେହି ଜଣକୁ -
ଉତ୍କଳ କେଶରୀଙ୍କୁ -
ସ୍ୱାଧୀନତାର ବାର୍ତ୍ତା ନେଇ, ଓହ୍ଲେଇ ଆସିଥିବା,
ଶାଶ୍ୱତ ପୁରୁଷ-
ହରେକୃଷ୍ଣ ମହତାବଙ୍କୁ।
କପାଳରୁ ପୋଛି ଦେଇ ବିଫଳତା,
ମାଡି ଚାଲିଥିଲେ ଗିରି ପରେ, ଗିରି ଶୃଙ୍ଗମାଳା,
ଅଗଣିତ ଦୀର୍ଘଶ୍ୱାସ, କୁଢ କୁଢ ନିଃସଙ୍ଗତା,
କିଛି ଈର୍ଷା, କିଛି ଅନୁକମ୍ପା,
ଅନ୍ତର୍ଦାହ, ଅନ୍ତର୍ଦ୍ୱନ୍ଦରେ ଭାଙ୍ଗି ନ ପଡି-
ଦୃଢ ଥିଲେ କର୍ମବୀର ମଣିଷଟି ପରି,
ସେ ଥିଲେ, ଐତିହାସିକ, ରାଜନୈତିକ,-
ସାମ୍ବାଦିକ, ସାହିତ୍ୟିକ, କୂଟନୈତିକ-
ଓଡିଶା ନିର୍ମାତା, ଓଡିଆ ଜାତିର ଗର୍ବଗୌରବ।
ଭୁଲି ଯାଇନୁ, ଭୁଲିବାର ନୁହେଁ,
ଏସବୁ ଆମ ଅତୀତ, ମାଇଲି ଖୁଣ୍ଟ,
କିନ୍ତୁ ହାଏ-
ନିଃଶବ୍ଦେ ପହଞ୍ଚିଲା ମରଣ ପରୱାନ୍.

ବିସର୍ଜନ ଦେଲୁ, ପ୍ରୟାଗ ଗଂଗୋତ୍ରୀ ଜଳରେ,
ଯନ୍ତ୍ରଣାରେ ଛଟ ପଟ ହୋଇ ଏ ଜାତିଟା-
ମଝିରେ ମଝିରେ ଦରାଣ୍ଡୁଛି, ତୁମ ସାଇତା ସିନ୍ଦୁକକୁ-
ନୀରବରେ ଡାକୁଅଛି, ଆଖିର ଶେଷବିନ୍ଦୁ ଲୁହ,
ଆଉ ବା କ'ଣ ଅଛି, ତୁମକୁ ଦେବା ପାଇଁ, ଆମେ ତ ଅନାଥ।

ପ୍ରଧାନ ଶିକ୍ଷକ, କୁମାର କେଲା
ଉନ୍ନୀତ ମଧ୍ୟ ଇଂରାଜୀ ବିଦ୍ୟାଳୟ
ରାଜଗାଙ୍ଗପୁର



# ଡଃ ମହତାବ
# ଅଣ ରାଜନୈତିକ ଦିଗ/କୋଣ

**ଅଧ୍ୟାପକ ପ୍ରଣୟ ଜେନା**

ରାଷ୍ଟ୍ରନୀତିଜ୍ଞ, ଐତିହାସିକ, ସାମ୍ବାଦିକ ଓ ସାହିତ୍ୟିକ ଡଃ ହରେକୃଷ୍ଣ ମହତାବଙ୍କର ବିଶାଳ ବ୍ୟକ୍ତିତ୍ୱ ମୁଖ୍ୟତଃ ଦୁଇଟି ସ୍ତମ୍ଭ ଉପରେ ଦଣ୍ଡାୟମାନ ଥିଲା — ଗୋଟିଏ ରାଜନୀତି, ଅନ୍ୟଟି ସାହିତ୍ୟ। ତାଙ୍କର ରାଜନୈତିକ ଜୀବନ ସାହିତ୍ୟିକ ଜୀବନ ଉପରେ ଅନଧିକାର ପ୍ରବେଶ କରି ନଥିଲା। ସେ ଲେଖିଥିଲେ," ରାଜନୀତି କ୍ଷେତ୍ରରେ ମୋର ଯେତିକି ଆଗ୍ରହ, ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେତିକି। ଏପରି ମୋର ଅଭ୍ୟାସ ହୋଇଯାଇଛି ଯେ, ଏ ଦୁଇଟି ମଧ୍ୟରେ ପ୍ରଭେଦ ବେଶୀ କିଛି ଜାଣିପାରେ ନାହିଁ।" ଏଥିପାଇଁ ଜଣେ ସାହିତ୍ୟିକ ତଥା ରାଜନୀତିଜ୍ଞ ହିସାବରେ ଓଡିଶା ଇତିହାସରେ ଡଃ ମହତାବ ଜଣେ ବିରଳ ଶ୍ରେଷ୍ଠ ସ୍ଥାନର ଅଧିକାରୀ।

ସେ ଗଳ୍ପ, କବିତା, ନାଟକ, ଉପନ୍ୟାସ ଓ ପ୍ରବନ୍ଧ ପ୍ରଭୃତି ରଚନା କରି ଯାଇଛନ୍ତି। ଆଲୋଚନାର ଅଭିନବତ୍ୱ ଓ ବିଚାରରେ ବୁଦ୍ଧିମତ୍ତା ତାଙ୍କର ସ୍ୱାତନ୍ତ୍ର। ତାଙ୍କର ଆତ୍ମଜୀବନ 'ସାଧନା ପଥେ', 'ଗାନ୍ଧିଜୀ ଓ ଓଡିଶା' 'ଗାଁ ମଜଲିସ' ଓ 'ଓଡିଶା ଇତିହାସ' ଗୁଡିକ ଜଣେ ପ୍ରାବନ୍ଧିକ ହିସାବରେ ତାଙ୍କର ବଳିଷ୍ଠ ସ୍ୱାକ୍ଷର ବହନ କରନ୍ତି। 'ଗାଁ ମଜଲିସ୍' ଏକ ଗଣଧର୍ମୀ ପ୍ରବନ୍ଧର ଜ୍ୱଳନ୍ତ ଉଦାହରଣ....।

ମହାତ୍ମା ଗାନ୍ଧି, ଶ୍ରୀ ଅରବିନ୍ଦ, ତିଳକ, ବିବେକାନନ୍ଦ ପ୍ରମୁଖ ମହାମନିଷୀମାନଙ୍କର ଛାୟା ତାଙ୍କ ଲେଖାରେ ସ୍ପଷ୍ଟ ପ୍ରତିଭାତ ହୋଇଥାଏ। ବେଦ, ବେଦାନ୍ତ, ଗୀତା, ବାଇବେଲ, ରାମାୟଣ ପ୍ରଭୃତି ଗ୍ରନ୍ଥମାନ ମଧ୍ୟ ତାଙ୍କ ଭାବନାକୁ ଖୋରାକ ଯୋଗାଇଥିଲା।

ସାହିତ୍ୟ ସମାଜର ଦର୍ପଣ। ସାମାଜିକ ଆବଶ୍ୟକତା ତାଙ୍କ ସାହିତ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ। ତାଙ୍କ ପ୍ରବନ୍ଧରେ ତତ୍କାଳୀନ ସମାଜ ଓ ରାଜନୀତିର ବହୁ ଘଟଣାବଳୀ ପ୍ରତୀୟମାନ। ସେବା, ତ୍ୟାଗ ଉପରେ ଆଧାରିତ ସମାଜବାଦୀ ସମାଜ ଗଠନର ସେ ସ୍ୱପ୍ନ ଦେଖୁଥିଲେ। ତାଙ୍କର ସାହିତ୍ୟରେ ସେ ନିଜର

ଅର୍ଥନୀତିକ ଦୃଷ୍ଟିକୋଣ ଓ ବିଜ୍ଞତାର ପରିଚୟ ପ୍ରଦାନ କରିଛନ୍ତି। 'ଆଗକୁ ନା ପଛକୁ' ଓ 'ସମାଜ ଓ ଜନସଂଖ୍ୟା' କୁ ଏ ଦିଗରେ ନିଦର୍ଶନ ଭାବେ ଗ୍ରହଣ କରାଯାଉ। ସେ ଗ୍ରାମ୍ୟ ଶିଳ୍ପ ଓ କୁଟୀର ଶିଳ୍ପ ଉପରେ ପ୍ରାଧାନ୍ୟ ଦେଇଥିଲେ।

'ଶିକ୍ଷା ସମସ୍ୟା' ପ୍ରବନ୍ଧରେ ସେ ପ୍ରଚଳିତ ଶିକ୍ଷାନୀତିର ଆଲୋଚନା କରିଥିଲେ। ତାଙ୍କ ପ୍ରବନ୍ଧଗୁଡିକ ବିବିଧ ବିଷୟ ଉପରେ ଆଧାରିତ। ସେଗୁଡିକ ଥିଲା ବିଶ୍ଳେଷଣାତ୍ମକ ଓ ପରିସଂଖ୍ୟାନଯୁକ୍ତ।

ଆଧୁନିକତାର ଆବରଣ ତଳେ ପାଶ୍ଚାତ୍ୟର ଅନ୍ଧାନୁସରଣକୁ ସେ ବ୍ୟଙ୍ଗ ବିଦ୍ରୁପ କରିଛନ୍ତି। 'ସାହିତ୍ୟ ଓ ରାଜନୀତି' ପ୍ରବନ୍ଧରେ ସାହିତ୍ୟର ରାଷ୍ଟ୍ର ଗଠନରେ ଭୂମିକା ଉପରେ ରେଖାପାତ କରିଥିଲେ। ତାଙ୍କର ସାହିତ୍ୟ ମାନବବାଦୀ ଓ ସେଥିରେ ଥାଏମାନବ ଜୀବନ ପ୍ରତି ଏକ ଅନାବିଳ ଶ୍ରଦ୍ଧା। ମଣିଷ ଜୀବନରେ ସଂକଳ୍ପର ପ୍ରଭାବ ଓ ଗୁରୁତ୍ୱ ସେ ବେଶ୍ ଉପଲବ୍ଧି କରିଥିଲେ। ସେ ଲେଖିଥିଲେ," ଆଘାତ ମଣିଷକୁ ମ୍ରିୟମାଣ କରିଦିଏ ଓ ସେଥିରେ କ୍ରମେ ଅଭ୍ୟସ୍ତ ହୋଇଯାଏ। କିନ୍ତୁ ଯେଉଁଠି ସେ ମ୍ରିୟମାଣ ନହୋଇ ବିକ୍ରମ ସହକାରେ ଆଘାତ ଉପରେ ଆରୋହଣ କରି ଲଗାମ ଟାଣେ, ସେ ଇତିହାସରେ ଖ୍ୟାତି ଅର୍ଜନ କରେ।"

ପଲ୍ଲୀ ମନକୁ ଛୁଇଁଲାଭଳି ଭାଷାରେ କଟକର ବ୍ୟବସାୟୀ ସଂଘର ସମସ୍ୟାଠାରୁ ଆରମ୍ଭ କରି ବିଶ୍ୱ ମିଳିତ ଜାତିସଂଘର ସମସ୍ୟା ବିଶ୍ଳେଷଣ ତାଙ୍କ ଦ୍ୱାରା ସହଜସାଧ୍ୟ ଥିଲା।

ଜଣେ ସାହିତ୍ୟିକର ଜ୍ଞାନ ଜ୍ଞାନମଣ୍ଡଳୀୟ ହେବା ଦରକାର ଓ ଏହା ବିଶେଷ ଭାବରେ ସମାଜ ବିଜ୍ଞାନର ପ୍ରତ୍ୟେକ ଅଂଶକୁ ସ୍ପର୍ଶ କରିବା ଦରକାର। ଜଣେ ସାହିତ୍ୟିକଙ୍କର ଚକ୍ଷୁ ତାହା ଦେଖି ପାରିବା ଦରକାର ଯାହାକୁ ସାଧାରଣ ଚକ୍ଷୁ ଦେଖିପାରିବ ନାହିଁ। ତାଙ୍କର ଅନ୍ତର୍ଦୃଷ୍ଟି ଥିବା ଦରକାର। ସାହିତ୍ୟ କଳ୍ପନା ପ୍ରସୂତ ନହୋଇ ବାସ୍ତବିକତା ଉପରେ ଆଧାରିତ ହେବା ଅବଶ୍ୟକ। ଡଃ ହରେକୃଷ୍ଣ ମହତାବ ଥିଲେ ଏହାର ଏକ ଅନନ୍ୟ ଉଦାହରଣ।

ସାହିତ୍ୟ ସାଧନା ତାଙ୍କର ରାଜନୈତିକ ଜୀବନଧାରାକୁ ସୁଶୃଙ୍ଖଳିତ ଓ ପରିମାର୍ଜିତ କରିଥିଲା। ସେ ସାଧାରଣ ଭୋଟ ପାଇଁ ଚିନ୍ତା ନକରି ରାଷ୍ଟ୍ର ପାଇଁ ଚିନ୍ତା କରୁଥିଲେ। ଆଉ ଚିନ୍ତା କରୁଥିଲେ ଭବିଷ୍ୟତ ପୀଢି ପାଇଁ।

# ଡକ୍‌ଟର ହରେକୃଷ୍ଣ ମହତାବଙ୍କ ଉପନ୍ୟାସ : ଏକ ଦୃଷ୍ଟିପାତ

ଡକ୍‌ଟର ମନ୍ମଥ କୁମାର ପ୍ରଧାନ

ଡକ୍ଟର ହରେକୃଷ୍ଣ ମହତାବ ଜଣେ ଲବ୍ଧପ୍ରତିଷ୍ଠିତ ସାରସ୍ୱତ ସାଧକ ଭାବରେ ପରିଚିତ। ଏକାଧାରରେ ସେ ଜଣେ କବି, ଗାଳ୍ପିକ, ଔପନ୍ୟାସିକ, ଐତିହାସିକ, ଗବେଷକ, ସାମ୍ବାଦିକ, ସଂପାଦକ, ଜନନାୟକ, ଉଚ୍ଚକୋଟୀର ରାଜନୀତିଜ୍ଞ ତଥା ଦେଶସେବକ ଭାବରେ ଖ୍ୟାତ। ଭାରତୀୟ ସ୍ୱାଧୀନତା ସଂଗ୍ରାମରେ, ଅସହଯୋଗ ଆନ୍ଦୋଳନରେ, ଗାନ୍ଧିଜୀଙ୍କ ଅହିଂସାତ୍ମକ ନୀତିରେ ଦେଶ ଓ ଦଶ ପାଇଁ ସେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ। ସେ ଥିଲେ ଓଡ଼ିଆ ଜାତିର କର୍ଣ୍ଣଧାର। ସେଥିପାଇଁ ତାଙ୍କୁ ମଧ୍ୟ 'ଉତ୍କଳକେଶରୀ' ବୋଲି କୁହାଯାଏ। ସେ ମର୍ମେ ମର୍ମେ ଅନୁଭବ କରିଛନ୍ତି ଅତୀବ ଓଡ଼ିଶାର ସାମାଜିକ, ରାଜନୀତିକ ଓ ଅର୍ଥନୀତିକ ସାଂସ୍କୃତିକ ବୈଷମ୍ୟକୁ। ସ୍ୱାଧୀନତା ପୂର୍ବବର୍ତ୍ତୀ ଏବଂ ପରବର୍ତ୍ତୀ ସାମାଜିକ ଚିତ୍ରସଂଘର୍ଷକୁ ତଉଲିଛନ୍ତି ଓ ତାହାକୁ ହିଁ ନିଜ ଲେଖନୀରେ ରୂପାୟିତ କରିଛନ୍ତି। ଅଗଣିତ ଜନମାନସକୁ ସଚେତନ କରାଇବାରେ ତାଙ୍କର ଲେଖନୀ ଶାଣିତ ଦୃଷ୍ଟିଭଙ୍ଗୀ ପ୍ରକଟ କରିଛି। 'ଗାଁ ମଜଲିସ୍' ହିଁ ତାଙ୍କର ଅନୁଭୂତି, ଅଭିଜ୍ଞତାର ଚରମ ନିଦର୍ଶନ। ସାହିତ୍ୟ-ଧର୍ମ-ସଂସ୍କୃତିର ବୌଦ୍ଧିକ ଅବଲୋକନ ହିଁ ଏହାର ଲକ୍ଷ୍ୟ। ଜଣେ ପ୍ରବୀଣ ରାଜନୀତିଜ୍ଞ ଭାବରେ ତାଙ୍କର ଦକ୍ଷତା ଓ ପ୍ରତିଭା କର୍ମମୟ ଜୀବନ ମଧ୍ୟରେ ସେ ପ୍ରମାଣିତ କରିଯାଇଛନ୍ତି।

ତାଙ୍କ କଥା ସାହିତ୍ୟର ସୀମା-ସରହଦ ସୁଦୂରପ୍ରସାରୀ ନ ହେଲେ ହେଁ ଏହାର ସିଦ୍ଧି ଯଥେଷ୍ଟ ରହିଛି। ରାଜନୈତିକ, ସାମାଜିକ ପୃଷ୍ଠଭୂମିରେ ତାଙ୍କ ଉପନ୍ୟାସର କଥାବସ୍ତୁ ଆଧାରିତ। ମହତାବଙ୍କ 'ନୂତନ ଧର୍ମ' ହେଉଛି ପ୍ରଥମ ଉପନ୍ୟାସ। ହଜାରୀବାଗ ଜେଲରେ ଥିବାବେଳେ ଏହାକୁ ସେ ରଚନା କରିଥିଲେ। 'ସାଧନାର ପଥେ' ପୁସ୍ତକରେ ସେ ନିଜେ କହିଛନ୍ତି, 'ଯେଉଁ ହରିଜନ ଆନ୍ଦୋଳନ ଦେଢ଼ବର୍ଷ ପରେ ମହାତ୍ମାଗାନ୍ଧୀ ଆରମ୍ଭ କରିଥିଲେ,

ସେହି ଆନ୍ଦୋଳନ ବିଷୟ ମୋ ମନକୁ ଆସିଲା; ସେଥିପାଇଁ ମୁଁ ନୂତନ ଧର୍ମ ଲେଖିଥିଲି। ସମାଜର ଅନ୍ଧବିଶ୍ୱାସ, କୁସଂସ୍କାର, ଜମିଦାରମାନଙ୍କର ଅତ୍ୟାଚାର, ଶୋଷଣ, ନାରୀଜାଗରଣ, ଧର୍ମ ନାମରେ ବ୍ୟଭିଚାର ଇତ୍ୟାଦିର ସ୍ୱରୂପ ଦେଖିବାକୁ ମିଳେ। ଏହା ପ୍ରଥମ ଉପନ୍ୟାସ ହେଲେ ହେଁ ଏଥିରେ ମାନବବାଦୀ ଚେତନା ପ୍ରକଟିତ।

ତାଙ୍କର 'ପ୍ରତିଭା' ଉପନ୍ୟାସ ସାମାଜିକ ଜୀବନର ଆଲେଖ୍ୟ ହେଲେ ହେଁ, ରାଜନୈତିକ ଜୀବନର ବହୁ ଅନୁଭୂତି, ସ୍ୱାଧୀନତା ସଂଗ୍ରାମର ଜ୍ୱଳନ୍ତ ଚିତ୍ର ଦେଖିବାକୁ ମିଳେ। ଏକପକ୍ଷରେ ସ୍ୱାଧୀନତା ଆନ୍ଦୋଳନ, ଅନ୍ୟ ପକ୍ଷରେ ରାଜଶକ୍ତିର ଅତ୍ୟାଚାର ବିରୁଦ୍ଧରେ ପ୍ରଜାମେଳି—ଦୁଇ ଚେତନାର ସମାହାରରେ ପ୍ରତିଭା ଉପନ୍ୟାସର ବିଷୟବସ୍ତୁ ଗତି କରିଛି। ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନର ଆହ୍ୱାନ ଉପନ୍ୟାସଟିରେ ପ୍ରତିଫଳିତ ହୋଇଛି। ପ୍ରତିଭା ପ୍ରଜାମେଳିରେ ଯୋଗଦାନ କରି ବିପ୍ଲବିନୀ ହୋଇଛି।ଏଥିରେ ନାରୀ ଜାଗରଣ ପାଇଁ ସ୍ରଷ୍ଟାମାନସଙ୍କ ଅଭିବ୍ୟକ୍ତି ପ୍ରକଟିତ। ନବୀନ ଓ ପ୍ରତିଭା ଦୁଇଟି ଦେଶପ୍ରେମୀ ବିପ୍ଳବୀ ଚରିତ୍ର ଜରିଆରେ ଜାତିପ୍ରୀତିର ନିଦର୍ଶନ ଦେଖିବାକୁ ମିଳେ। ୧୯୪୨ ମସିହାରୁ ୧୯୪୬ ମସିହା ପର୍ଯ୍ୟନ୍ତ ସେ ଅହମ୍ମଦନଗର ଫୋର୍ଟରେ ବନ୍ଦୀ ଥିଲାବେଳେ ଏହି ଉପନ୍ୟାସଟିକୁ ରଚନା କରିଥିଲେ। ତାଙ୍କ ପ୍ରତ୍ୟକ୍ଷ ଅନୁଭୂତିର ସାର୍ଥକ ରୂପାୟନ ବାସ୍ତବତାର ଦୃଷ୍ଟିରେ ଯଥାର୍ଥ ହୋଇଛି।

ତାଙ୍କର 'ଅବ୍ୟାପାର' ଅନ୍ୟତମ ସଫଳ କୃତି। ଏଥିରେ ଗଡଜାତ ରାଜାଙ୍କ ଅତ୍ୟାଚାର ବିରୁଦ୍ଧରେ ଆନ୍ଦୋଳନ, ବିପ୍ଳବ ଦମନ ପାଇଁ ରାଜଶକ୍ତି ଓ ଜୁଲମ୍, ଅତ୍ୟାଚାର, ଦେଶମାତୃକା ପାଇଁ ଆତ୍ମୋତ୍ସର୍ଗ, ସର୍ବୋପରି ଆଦର୍ଶମୟ ଗାନ୍ଧୀବାଦୀ ଚେତନାର ସମନ୍ୱୟ ଦେଖିବାକୁ ମିଳେ। ଉପନ୍ୟାସଟିରେ ସମସାମୟିକ ସ୍ୱାଧୀନତା ଆନ୍ଦୋଳନର ସ୍ୱର ଓ ସ୍ୱାକ୍ଷର ଥିଲେ ହେଁ ନାରୀ ହୃଦୟର ସ୍ୱାଭାବିକ ପ୍ରବୃତ୍ତିକୁ କଥାକାର ଲେଖନୀରେ ତୋଳିଧରିଛନ୍ତି। ମହନୀୟ ତ୍ୟାଗ, ଆଦର୍ଶବୋଧରେ ଦୀକ୍ଷିତା ହୋଇ କୁମୁଦିନୀ ଦେଶପ୍ରାଣତାରେ ଆତ୍ମନିମଜ୍ଜିତା ହେଲେ ହେଁ ସେ ନାରୀ। କୋମଳ ହୃଦୟରେ ତା'ର ସୃଷ୍ଟି ହୋଇଛି ଅହେତୁକ ଆସକ୍ତି। ଲାଲମୋହନ ଦେଶପ୍ରେମୀ, ଆଦର୍ଶବାଦୀ, ନିର୍ଭୀକ ପୁରୁଷ। ସେ ବିବାହିତା ହେଲେ ହେଁ ତା'ର ପତ୍ନୀ ଉପେକ୍ଷିତା। କୁମୁଦିନୀ ଚାହିଁଛି ଲାଲମୋହନର ସାନ୍ନିଧ। ସୁଖର ସାଂସାର ବାନ୍ଧିବାର ଆଶା–ଆକାଂକ୍ଷାର ନିର୍ମୁଳି ଲତାଟି

ତା'ର ସୁଖ ସିମିଟି ଯାଇଛି ପରିସ୍ଥିତିର ଦାବଦହନରେ। ହୃଦୟରେ ତା'ର ସୃଷ୍ଟି ହୋଇଛି ବେସୁରା ବେହାଗ୍। ଅସରନ୍ତି କାମନାରେ ଜ୍ୱାଳାରେ ସେ ହୋଇଛି ଅସହାୟ। ବିପର୍ଯ୍ୟସ୍ତ ପ୍ରେମର ଚିତ୍ରର କରୁଣ ସ୍ମାରକୀ ଯେ କୌଣସି ପାଠକକୁ ଅଭିଭୂତ କରେ। ସଂଗ୍ରାମୀ ଜୀବନରେ ନାରୀଜୀବନର ସ୍ୱାଭାବିକତା ଓ ଚିରନ୍ତନ ପ୍ରବୃତ୍ତିର ବାସ୍ତବତା ହିଁ ଉପନ୍ୟାସଟିକୁ ଜୀବନ୍ତ କରିଛି। ଉପନ୍ୟାସଟିରେ ଦେଶସେବା କରିବାକୁ ଯାଇ ସଂସାର କରିବା ଓ ବଞ୍ଚିବାର ମୋହ ରଖିବା, ପୁଣି ପ୍ରେମ କରିବାର ଅଭୀପ୍‌ସାକୁ ଲକ୍ଷ୍ୟ ରଖିବା ଏକ ଅବ୍ୟାପାର ଘଟଣା ହୋଇଥିବାରୁ ଉପନ୍ୟାସଟିର ନାମକରଣଟି ବେଶ୍ ବାସ୍ତବ ହୋଇଛି। ଏହା ଏକ ସାର୍ଥକ ଉପନ୍ୟାସ ରୂପେ ଆଦୃତ।

ତାଙ୍କର 'ଟାଉଟର' ମଧ୍ୟ ଏକ ରାଜନୈତିକ ଉପନ୍ୟାସ। ଅହମଦ-ନଗର ଫୋର୍ଟ ବନ୍ଦୀ ଜୀବନର ଏହା ଅନ୍ୟତମ ସୃଷ୍ଟି ରୂପେ ଖ୍ୟାତ। ନାମକରଣରୁ ଏହାର ବିଷୟବସ୍ତୁ ସ୍ପଷ୍ଟ ରୂପେ ଅନୁମେୟ। ୧୯୩୦ ମସିହା ବେଳକୁ ଜମିଦାର ଓ ସରକାରୀ କର୍ମଚାରୀମାନଙ୍କ ଶୋଷଣ ଓ ଅତ୍ୟାଚାରକୁ ପ୍ରତ୍ୟକ୍ଷ ଭାବରେ ସ୍ରଷ୍ଟାମାନସ ଅନୁଭବ କରିଛନ୍ତି। କୃଷି ଓ କୃଷକ ହିଁ ଜାତିର ମେରୁଦଣ୍ଡ। ପଲ୍ଲୀ ଅଞ୍ଚଳରେ ଟାଉଟରମାନଙ୍କର ମାମଲତି, କାରସାଦି ତଥା ପ୍ରବଞ୍ଚନା ସାଧାରଣ ନିରୀହ କୃଷକମାନଙ୍କୁ କିଭଳି ନିପୀଡ଼ିତ ଓ ନିର୍ଯ୍ୟାତିତ କରୁଥିଲା, ତାହାର ଏକ ବାସ୍ତବ ରୂପ ଏଥିରେ ରୂପାୟିତ। ଗୋଟିଏ ପଟରେ ବାସୁଦେବ, ହରପ୍ରସାଦ ଓ ପ୍ରହ୍ଲାଦ ପରି ଶୋଷକ-ଟାଉଟର ଗୋଷ୍ଠୀ, ଅନ୍ୟ ପକ୍ଷରେ ସମାଜସେବୀ ଆଦର୍ଶବାଦ ଶିକ୍ଷକ ରାମଚନ୍ଦ୍ର ମହାପାତ୍ର—ଏମାନଙ୍କ ମଧ୍ୟରେ ଥିବା ସାମାଜିକ ଭାବ-ସଂଘର୍ଷର ଦ୍ୱନ୍ଦ୍ୱକୁ ସ୍ରଷ୍ଟା ଉପସ୍ଥାପିତ କରିଛନ୍ତି। ବାଲେଶ୍ୱର ଜିଲ୍ଲାର ସେରଗଡ଼ ଗ୍ରାମରେ ଘଟିଥିବା ମହାଜନ-ଜମିଦାରମାନଙ୍କର ଶୋଷଣରେ କୃଷକ ସଂପ୍ରଦାୟ କିଭଳି ବଳି ପଡ଼ିଛନ୍ତି—ତାହାହିଁ ଚିତ୍ରିତ ହୋଇଛି। ପଲ୍ଲୀ ଅଞ୍ଚଳର ସାମୂହିକ ଲୋକଚରିତ୍ରର ପରିବର୍ତ୍ତନ ଓ ଦେଶାତ୍ମବୋଧରେ ଅନୁପ୍ରାଣୀତ ହେବା ପାଇଁ ମହତାବଙ୍କ ଅଭିବ୍ୟକ୍ତି ପ୍ରକଟିତ।

ଭାରତର ଉତ୍ତର ସତୁରୀର ରାଜନୈତିକ ଚେତନାର ପୃଷ୍ଠପୀଠିକାରେ କଥାକାରଙ୍କ ଉତ୍ତର ବୟସରେ 'ତୃତୀୟପର୍ବ' ଓ '୧୯୭୫' ଉପନ୍ୟାସ ଦ୍ୱୟ ରଚିତ ହୋଇଥିବାର ଜଣାଯାଏ। ୧୯୭୪ ମସିହାରେ ଭାରତର ରାଜନୈତିକ, ଅର୍ଥନୈତିକ ବିପର୍ଯ୍ୟସ୍ତ ଅବସ୍ଥା ସୃଷ୍ଟି ହେବାରୁ ଜନସାଧାରଣ ପ୍ରତିକ୍ରିୟାଶୀଳ

ହୋଇ ଉଠିଥିଲେ। ଏପରି ସଙ୍କଟମୟ ଅବସ୍ଥାରେ ଜନମତକୁ ଉପେକ୍ଷା କରି ୧୯୭୫ ମସିହା ଜୁନ୍ ମାସରେ ସେ ସମୟର ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ଜରୁରୀକାଳୀନ ପରିସ୍ଥିତି ଜାରି କରି କିପରି କ୍ଷମତାର ଅପବ୍ୟବହାର କରିଥିଲେ, ତାହାର ଚିତ୍ର 'ତୃତୀୟପର୍ବ'ରେ ଦର୍ଶାଯାଇଛି। ସ୍ରଷ୍ଟା ନିଜେ ବହୁଥର କାରାବରଣ କରିଛନ୍ତି ସ୍ୱାଧୀନତା ପାଇଁ। ସ୍ୱାଧୀନତାର ମୂଲ୍ୟବୋଧ ଓ ସ୍ୱାଧୀନତା ସଂଗ୍ରାମର ନୂତନ ସ୍ୱପ୍ନକୁ ସାର୍ଥକ କରିସାରିଲା ପରେ ତାହାର ବିପର୍ଯ୍ୟୟକୁ ସ୍ରଷ୍ଟା ବରଦାସ୍ତ କରିପାରି ନାହାନ୍ତି। ଗଣତନ୍ତ୍ରର ଶାସନ ଆଳରେ କିପରି ମନ୍ତ୍ରୀମାନେ ସ୍ୱେଚ୍ଛାଚାରୀ ପ୍ରବଞ୍ଚକର ମୂର୍ତ୍ତିମନ୍ତ ବିଗ୍ରହ ରୂପେ କ୍ଷମତା ପାଇଁ ବ୍ୟଭିଚାର କରିଛନ୍ତି, ତାହାକୁ ଦର୍ଶାଇଛନ୍ତି।

'୧୯୭୫' ଉପନ୍ୟାସଟି ୧୯୭୯ ମସିହାରେ ପ୍ରକାଶିତ। ସେଥିରେ ୧୯୭୫ ମସିହାର ଉଲଂଘ ରାଜନୀତିର ବିକଟ ରୂପ ଦେଖିବାକୁ ମିଳେ। ଓଡ଼ିଶା ତଥା ଅନ୍ୟ ପ୍ରଦେଶର ସ୍ୱାଧୀନତାସଂଗ୍ରାମୀ ବାଳକୃଷ୍ଣ, ଜଗଦୀଶ ଓ ଶରତଙ୍କ ଜୀବନର ଗତିପଥ—'ମିସା' ଆଇନରେ ଗିରଫ ହେବା କଥାବସ୍ତୁ ହିଁ ଉପନ୍ୟାସର କଥାବସ୍ତୁ। ଶାସନରେ ଥିବା ନେତାମାନଙ୍କର ଆତ୍ମଘାତୀ ପାଶବିକ ଆଚରଣର ବାସ୍ତବ ଚିତ୍ର ପ୍ରତିଫଳିତ। 'ତୃତୀୟପର୍ବ' ଉପନ୍ୟାସରେ ସ୍ୱାଧୀନଚେତା ରାମଶଙ୍କର, '୧୯୭୫' ଉପନ୍ୟାସରେ ବାଳକୃଷ୍ଣ ଏକ ବଳିଷ୍ଠ ରାଜନୈତିକ ଚରିତ୍ରର ପ୍ରାଧାନ୍ୟ ନେଇ ଉଲ୍ଲିଖିତ। ରାଜନୈତିକ ଜୀବନଚର୍ଯ୍ୟାର ଦିଗଦର୍ଶନ, ସଚେତନତା, ସାମାଜିକ ଆଦର୍ଶକୁ ବଜାୟ ରଖିବାର ପ୍ରୟାସ ଉପନ୍ୟାସରେ ପ୍ରକଟିତ ହୋଇଛି।

ସାମାଜିକ କଳାକୁ ଯେଉଁ କଳା, ପ୍ରକାଶ କରେ, ତାହା ହିଁ ଶ୍ରେଷ୍ଠ କଳା। ମହତାବ ଦୀର୍ଘ ଦିନ ଧରି ରାଜନୀତିରେ ସଂପୃକ୍ତ ରହିଛନ୍ତି। ତାଙ୍କ ଜୀବନର ପରିପକ୍ୱ ଅନୁଭୂତି ଓ ଅଭିଜ୍ଞତାର ଚରମ ନିଦର୍ଶନ ହିଁ ତାଙ୍କୁ ଉପନ୍ୟାସ ରଚନାରେ ବ୍ରତୀ କରାଇଛି। ତେଣୁ ତାଙ୍କ ଉପନ୍ୟାସଗୁଡିକ ବାସ୍ତବତାର ମାନଦଣ୍ଡରେ ବାସ୍ତବ ଓ ଜୀବନ୍ତ ହୋଇଛି। ରାଜନୀତିକ ଚେତନା ସାମାଜିକ ଚିନ୍ତାଠାରୁ ପୃଥକ୍ ନୁହେଁ। ୧୯୨୦ ମସିହାରୁ ୧୯୭୨ ମସିହା ପର୍ଯ୍ୟନ୍ତ ରାଜନୈତିକ ଘଟଣାପ୍ରବାହ ତାଙ୍କ ଉପନ୍ୟାସର କଥାବସ୍ତୁକୁ ଆଧାରିତ କରିଛି। ତେଣୁ ତାଙ୍କ ଉପନ୍ୟାସଗୁଡ଼ିକ ସାମାଜିକ-ରାଜନୀତିକ ଇତିହାସ କହିଲେ ସତ୍ୟର ଅପଳାପ ହେବନି। ସେ ଚାହିଁଛନ୍ତି ଏକ ଶୋଷଣମୁକ୍ତ ଶାନ୍ତ-ସମାହିତ ଆଦର୍ଶ

ସମାଜ-ଜୀବନ ଗଠନ କରିବାକୁ। ତେଣୁ ସେ ଉପନ୍ୟାସରେ ରାଜନୈତିକ ସଚେତନତା ପ୍ରତି ଦୃଷ୍ଟି ଆକର୍ଷଣ କରାଇଛନ୍ତି। ସମାଜର ବଡ଼ପଣ୍ଡା, ଶୋଷକ, ଟାଉଟର, ନେତା ମନ୍ତ୍ରୀ, ଓକିଲ, ବିଚାରପତି, ପ୍ରଚଳିତ ଆଇନକାନୁନ, ଶାସନ ବ୍ୟବସ୍ଥା, ପୋଲିସ, ଅମଲାତନ୍ତ୍ରମାନଙ୍କର ଦୋଷଦୁର୍ବଳତା କପଟତାକୁ ଦର୍ଶାଇଛନ୍ତି; ଯୁବଗୋଷ୍ଠୀର ଭୂମିକାକୁ ଦର୍ଶାଇ, ଶିକ୍ଷା ସଂସ୍କୃତିର ଉନ୍ନତି ପାଇଁ ଅଭିବ୍ୟକ୍ତି ପ୍ରକଟ କରିଛନ୍ତି। ଗାନ୍ଧୀବାଦୀ ଦର୍ଶନର ଆଦର୍ଶବୋଧ ପ୍ରତି ସେ ସମ୍ମାନ ଦେଖାଇଛନ୍ତି। ନିରୀହ ଜନସାଧାରଣଙ୍କ ପ୍ରତି ମାନବବାଦୀ ଦୃଷ୍ଟିକୋଣ ପ୍ରକଟ କରିଛନ୍ତି। 'ସମାଜବାଦ' ଓ 'ଆଦର୍ଶବାଦ' ହିଁ ତାଙ୍କ ସ୍ରଷ୍ଟାମାନସର ଚରମ ଅଭିବ୍ୟକ୍ତି ରୂପେ ପରିଲକ୍ଷିତ। ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ତାଙ୍କର ରାଜନୈତିକ ଦୃଷ୍ଟିଭଙ୍ଗୀର ଅବଦାନ ଅବିସ୍ମରଣୀୟ। ଏଗୁଡିକ ନିଶ୍ଚିତ ରୂପେ ଯୁଗ ଯୁଗ ଧରି ପ୍ରଚଳିତ ରାଜନୀତିକୁ ଖୋରାକ ଯୋଗାଇବ।

ଓଡ଼ିଆ ବିଭାଗ, ବେଳାଭୂମି କଲେଜ, ବାଲେଶ୍ୱର

# ତାଙ୍କରି ପ୍ରେରଣା...

**ଦିଲୀପ ରାୟ**

ଉତ୍କଳ କେଶରୀଙ୍କୁ ଉତ୍କଳ ରାଜନୀତିରେ ମୋ ପରି ଜଣେ ମୂଷିକ ମୂଲ୍ୟାୟନ କରିବା କଷ୍ଟସାଧ୍ୟ। ମୋ ବୟସର ଯୁବକମାନେ ଉତ୍କଳ ଗୌରବ ମଧୁସୂଦନ ଦାସ କିମ୍ବା ଉତ୍କଳମଣି ଗୋପବନ୍ଧୁ ଦାସଙ୍କୁ ଦେଖିନାହୁଁ କିମ୍ବା ସେମାନଙ୍କ ସଂସ୍ପର୍ଶରେ ଆସି ନାହୁଁ ସତ, ମାତ୍ର ଆମେ ଯେଉଁମାନେ ଓଡିଶାରେ ରାଜନୀତି କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛୁ, ସେମାନେ ଉତ୍କଳ କେଶରୀ ହରେକୃଷ୍ଣ ମହତାବ ବା କଳିଙ୍ଗ କେଶରୀ ବିଜୁ ପଟ୍ଟନାୟକଙ୍କର ନୀତି ଓ ଆଦର୍ଶକୁ ଅନୁସରଣ ନ କରିଥିଲେ, ରାଜନୀତିରେ ଆମର କୌଣସି ସ୍ଥିତି ହୁଏତ ନ ଥାନ୍ତା।

ଶୁଣିଛି ରାଉରକେଲାରେ ଇସ୍ପାତ କାରଖାନା ପ୍ରତିଷ୍ଠା ହେଉ ବୋଲି କେବଳ ଉତ୍କଳ କେଶରୀ ଚାହିଁ ନଥିଲେ, ଏହି ବିରାଟ ଶିଳ୍ପ ପ୍ରତିଷ୍ଠିତ ହୋଇଯିବା ପରେ ମଧ୍ୟ ଓଡ଼ିଶା ଲୋକେ ଯେପରି ଶିଳ୍ପ ସହାୟତାରେ ଏଠାରେ ପ୍ରତିଷ୍ଠା ଲାଭ କରିପାରବେ, ସେଥିପାଇଁ ସେ ଉଦ୍ୟମ କରିଥିଲେ। ମୋର ପିତା ସ୍ୱର୍ଗୀୟ ହୃଷିକେଶ ରାୟ ମଧ୍ୟ ତାଙ୍କରି ପ୍ରେରଣା ଓ ଆଶୀର୍ବାଦରେ ଏଠାରେ ପହଞ୍ଚି ବ୍ୟବସାୟ ଓ ରାଜନୀତି କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିବାକୁ ଇଚ୍ଛା କରିଥିଲେ। ତାଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରଜାତନ୍ତ୍ର ଜରିଆରେ ଓଡ଼ିଶା ଓ ଓଡ଼ିଆଙ୍କର ସ୍ୱାର୍ଥରକ୍ଷା ଲାଗି ମୋର ପିତା ମଧ୍ୟ ଅକ୍ଲାନ୍ତ ଉଦ୍ୟମ କରିଥିଲେ। ଏବେ ମୋର ସେହି ପିତାଙ୍କ ଆର୍ଶୀବାଦ ଓ ପ୍ରେରଣାରୁ ମୁଁ ବ୍ୟବସାୟ ଓ ରାଜନୀତି କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିପାରିଲି। ତେଣୁ ମହତାବ ବାବୁଙ୍କର ଇଚ୍ଛାର ଉତ୍ତରାଧିକାରୀ ବୋଲି ମୁଁ ନିଜକୁ ମନେ କରୁଛି।

ପଶ୍ଚିମ ଓଡ଼ିଶାର ସ୍ୱାର୍ଥରକ୍ଷା ଲାଗି ଡଃ ମହତାବ ପ୍ରେରଣାରେ ଯେଉଁ ଆନ୍ଦୋଳନ ଆଜି ଆମେ କରୁଛୁ, ତାହା ନିଶ୍ଚୟ ଦିନେ ନା ଦିନେ ଫଳବତୀ ହେବ। ଅନଗ୍ରସର ଓଡ଼ିଶାକୁ ଭାରତବର୍ଷରେ ଏକ ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ଲାଗି ଆମେମାନେ ଯେଉଁ ସଙ୍କଳ୍ପ ନେଇଛୁ, ଓଡ଼ିଶାର ସ୍ୱାର୍ଥରକ୍ଷା ଲାଗି ରାଉରକେଲାରେ ଯେପରି ଆନ୍ଦୋଳନ ଆରମ୍ଭ କରିଛୁ। ତଦ୍ୱାରା ଡଃ ମହତାବଙ୍କର ଅପୂର୍ଣ୍ଣ ଅଭିଳାଷକୁ ପୂରଣ କରିବା ଦିଗରେ ଯେ ସହାୟକ ହେବ। ଏଥିରେ ସନ୍ଦେହ ନାହିଁ।

ପୂର୍ବତନ ମନ୍ତ୍ରୀ ଓ ସାଂସଦ
ଡେଲି ମାର୍କେଟ୍ ଅଞ୍ଚଳ, ରାଉରକେଲା

# ଅଦ୍ୱିତୀୟ ମହତାବ

## ପ୍ରଭାତ ମହାପାତ୍ର

ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ଯୋଗୁଁ ଆଜି ଓଡ଼ିଶା ଗର୍ବିତ। ଏପରି କୌଣସି କ୍ଷେତ୍ର ଓଡ଼ିଶାରେ ନାହିଁ, ଯେଉଁଠି ଡଃ. ମହତାବଙ୍କ ଅବଦାନ ନାହିଁ। ଅଦ୍ୱିତୀୟ ଥିଲା ତାଙ୍କର ବ୍ୟକ୍ତିତ୍ୱ। ଆଧୁନିକ ଓଡ଼ିଶାର ନବ ନିର୍ମାତା ଭାବେ ସେ ପ୍ରକୃତରେ ଅବିସ୍ମରଣୀୟ।

ଆଜି ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ସ୍ୱର ଉଠୁଛି। ମାତ୍ର ଓଡ଼ିଶା ମଧ୍ୟରେ ପଶ୍ଚିମ ଓଡ଼ିଶା, ଉତ୍ତର ଓଡ଼ିଶା ବା ଉପକୂଳବର୍ତ୍ତୀ ଓଡ଼ିଶା ଏହିପରି ଭେଦଭାବ ଓଡ଼ିଆମାନଙ୍କ ମନରେ ଜାଗ୍ରତ ନ ହେଉ ବୋଲି ମହତାବ ବାବୁ ଚାହୁଁଥିଲେ। କେବଳ ପଶ୍ଚିମ ଓଡ଼ିଶା କାହିଁକି, ଅନଗ୍ରସର ଓଡ଼ିଶାର ଉନ୍ନତି ପାଇଁ ସେ ସବୁବେଳେ ବ୍ୟାକୁଳତା ପ୍ରକାଶ କରୁଥିଲେ। ଏହାକୁ ଦୃଷ୍ଟିରେ ରଖି ସେ ହୀରାକୁଦଠାରେ ବନ୍ଧ ନିର୍ମାଣ କରିଥିଲେ। ପଶ୍ଚିମ ଓଡ଼ିଶାର ଏହି ବନ୍ଧ ଯୋଗୁ ସମଗ୍ର ଓଡ଼ିଶା ଆଜି ବିଜୁଳି ଶକ୍ତି ବା ଜଳସେଚନ କ୍ଷେତ୍ରରେ କାହାରି ଦ୍ୱାରସ୍ଥ ହେଉନାହିଁ। ଅଥଚ ଏହି ବନ୍ଧ ନିର୍ମାଣ ସମୟରେ ତାଙ୍କୁ ବହୁ ସମାଲୋଚନାର ଶିକାର ହେବାକୁ ପଡ଼ିଥିଲା।

ଆଜି ଯେଉଁ ଶିଳ୍ପନଗରୀ ରାଉରକେଲା ଆମେ ଦେଖୁଛୁ, ତାହା ମଧ୍ୟ ମହତାବ ବାବୁଙ୍କର ପରିକଳ୍ପନା। ମୋର ସେଦିନର କଥା ମନେ ପଡୁଛି। ମୋର ଦାଦା ସାହିତ୍ୟିକ ଡଃ ଖଗେଶ୍ୱର ମହାପାତ୍ରଙ୍କଠାରୁ ଚିଠିଟିଏ ନେଇ ମୁଁ କଟକରେ ଡଃ ମହତାବଙ୍କ ନିକଟରେ ପହଞ୍ଚିଲି। ୧୯୮୦ ମସିହା ହେବ। ପ୍ରଜାତନ୍ତ୍ର ସହାୟତାରେ ପ୍ରକାଶିତ ଇଂରାଜୀ ସାପ୍ତାହିକ ଇଷ୍ଟର୍ଣ୍ଣ ଟାଇମସ୍‌ରେ ରାଉରକେଲାରୁ ପ୍ରତିନିଧି ହୋଇ ସମ୍ବାଦ ବଡ଼ବାପା ପରିବେଷଣ କରିବା ଲାଗି ମୋତେ ସୁପାରିଶ କରିଥିଲେ। ଡଃ ମହତାବ ଚିଠିଟି ପାଇ ଆଗ୍ରହ ପ୍ରକାଶ କଲେ ଏବଂ ସେତେବେଳେ ଇଷ୍ଟର୍ଣ୍ଣ ଟାଇମସ୍‌ର ପରିଚାଳନା ସଂପାଦକ ଥିବା ତାଙ୍କର ପୁତ୍ର ଭର୍ତ୍ତୃହର ବାବୁଙ୍କୁ ଦେଖା କରିବାକୁ ମୋତେ କହିଲେ। ଆଜି ପ୍ରଜାତନ୍ତ୍ରର ରାଉରକେଲା ପ୍ରତିନିଧି ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର ସେତେବେଳେ ଇଷ୍ଟର୍ଣ୍ଣ ଟାଇମସ୍‌ରେ ସହ-ସଂପାଦକ ଭାବେ କାର୍ଯ୍ୟ କରୁଥାନ୍ତି। ଭର୍ତ୍ତୃହରି ବାବୁ ଖୁସି ହେଲେ ଏବଂ ମୋତେ ସାମ୍ବାଦିକତା ଲାଗି ସୁଯୋଗ ଦେବାକୁ

ଚାହିଁଲେ ଏବଂ ମୋର ଅନୁରୋଧ କ୍ରମେ ଇଷ୍ଟର୍ଣ୍ଣ ଟାଇମସର ଆଇଡେଣ୍ଟିଟି କାର୍ଡ ମଧ୍ୟ ଦେଲେ ।

ଏହାପରେ ମୁଁ ଶ୍ରମିକ ସଂଗଠନ ଓ କଂଗ୍ରେସ ସଂଗଠନକୁ ସକ୍ରିୟ କରିବାକୁ ରାଉରକେଲାରେ ଲାଗି ପଡ଼ିଲି । ୧୯୯୫ରେ ଓଡ଼ିଶା ବିଧାନ ସଭା ଲାଗି ହେବାକୁ ଥିବା ନିର୍ବାଚନରେ ମୁଁ ପ୍ରାର୍ଥୀ ହେବାକୁ ଉଦ୍ୟମ କରୁଥାଏଁ । ଇତି ମଧ୍ୟରେ ବହୁ ଘାତ ପ୍ରତିଘାତ ଦେଇ ରାଉରକେଲାର ପ୍ରଜାତନ୍ତ୍ର ଗତି କରୁଥାଏ । ଗୁରୁକଲ୍ୟାଣ ବାବୁ କଟକରୁ ଆସି ଏଠାରେ ଅବସ୍ଥାପିତ ହେବା କଥା ଶୁଣିଲି । ଚାରି ନମ୍ବର ସେକ୍ଟରର ପୂର୍ବ ବିଭାଗର ଡାକବଙ୍ଗଳାରେ ସେ ରହୁଥିଲେ । ଭେଟ ହେଲା । ବହୁ ଆଲୋଚନା ହେଲା ତାଙ୍କ ସହ, ପ୍ରଜାତନ୍ତ୍ର ବିଷୟରେ, ରାଜନୀତି ବିଷୟରେ ।

୧୯୮୫ ବିଧାନ ସଭା ନିର୍ବାଚନରେ ମୁଁ ପ୍ରାର୍ଥୀ ହେଲି କଂଗ୍ରେସ ଦଳ ପକ୍ଷରୁ । ଅନେକ ଆଶା କରି ନଥିଲେ ମୁଁ ପ୍ରାର୍ଥୀ ହେବି ବୋଲି । କଂଗ୍ରେସ ଦଳର ଅନେକ ମୋତେ ବିରୋଧ କଲେ । ମୁଁ ହାରିବି ବୋଲି ମୋ ବିରୋଧୀ ଲୋକେ ପ୍ରଚାର କରିଦେଲେ । ମାତ୍ର ଡଃ. ମହତାବଙ୍କ ଆଶୀର୍ବାଦରୁ ତାଙ୍କରି କୁଟନୈତିକ ବୁଦ୍ଧି ବଳରେ ମୁଁ ମୋର ସ୍ଥିତିରକ୍ଷା କରିବାକୁ ସଂଗ୍ରାମ ଜାରୀ ରଖିଲି । ରାଉରକେଲା ଶ୍ରମିକ ସଂଗଠନର ମୁଁ ସଭାପତି ଓ ପାନିକର ବାବୁ ସାଧାରଣ ସଂପାଦକ । ଶ୍ରମିକ ସଂଗଠନର ଭାଇ ଓ ଭଉଣୀମାନେ ମୋତେ ସାହାଯ୍ୟ କଲେ । କେତେକ ଜାତୀୟ ସମ୍ବାଦପତ୍ର ଓ କେତେକ ସ୍ଥାନୀୟ ସମ୍ବାଦପତ୍ର ମଧ୍ୟ ମୋ ବିରୋଧରେ ଲେଖିଲେ । ମୁଁ ଜଣେ ଦୁର୍ବଳ ପ୍ରାର୍ଥୀ ବୋଲି ଚିତ୍ରଣ କଲେ । ମାତ୍ର ଡଃ ମହତାବଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରଜାତନ୍ତ୍ରର ଗୁରୁକଲ୍ୟାଣ ବାବୁ ଅତି ନିରପେକ୍ଷ ଭାବେ ଓ ଚମତ୍କାର ଭାବେ ପ୍ରାକ୍ ନିର୍ବାଚନ ସମ୍ବନ୍ଧରେ ବିଶ୍ଳେଷଣ କରି ପରିବର୍ତ୍ତନ ହେବ ବୋଲି ଯେପରି ଲେଖିଲେ, ତାହା ଅନ୍ୟ ସମ୍ବାଦପତ୍ର ଗୁଡ଼ିକର କେବଳ ଦୃଷ୍ଟି ଆକର୍ଷଣ କଲା ନାହିଁ, ମୋତେ ନିର୍ବାଚନରେ ଜିତିବା କ୍ଷେତ୍ରରେ ମଧ୍ୟ ସାହାଯ୍ୟ କଲା । ତେଣୁ ସବୁ ଦୃଷ୍ଟିରୁ ମୁଁ ଡଃ ମହତାବଙ୍କ ନିକଟରେ ଋଣୀ ।

ବିଧାୟକ,
ବି-୧, ସେକ୍ଟର-୩,
ରାଉରକେଲା-୨

■■

# 'ଟାଉଟର'
# ମହତାବ-ସ୍ରଷ୍ଟା ମାନସର ଆଦ୍ୟସ୍ମରଣ

**ଡକ୍ଟର ଶ୍ରୀଚରଣ ମହାନ୍ତି**

ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ସଂପର୍କରେ ଡଃ. ଭାବଗ୍ରାହୀ ମିଶ୍ର କହନ୍ତି- 'ଡକ୍ଟର ମହତାବ ଜଣେ ଅତ୍ୟନ୍ତ ପ୍ରତିଭା ସଂପନ୍ନ ବ୍ୟକ୍ତିତ୍ୱ, ସେ ସର୍ବଦା ଅତ୍ୟନ୍ତ ଅବ୍ୟାପାରରେ ଲିପ୍ତ ରହନ୍ତି ପୁଣି ସେ ଜଣେ ବୃଦ୍ଧ ଟାଉଟର।' କଥାଟାକୁ ଫେଣେଇ ଦେଖିଲେ ଏହା ଡକ୍ଟର ମହତାବଙ୍କର ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ସଂକେତ ବହନ କରିଥାଏ। ବହୁ ସମସ୍ୟା, ବହୁବିଧ ସମାଜ ଓ ବିଶୃଙ୍ଖଳ ଶାସନ ମଧ୍ୟରେ ବୁଡିରହି ଯେ ଭୀଷ୍ମଙ୍କ ଭଳି ଅଚଳ, ଓ ଅଶଂକିତ ରହୁଥିଲେ ସେ ହେଉଛନ୍ତି ମହାପ୍ରତାପୀ ମହତାବ। ସଂଗ୍ରାମ, ସଂସ୍କାର ଓ ସାହିତ୍ୟର ତ୍ରୀବେଣୀ ସଂଗମ ହୋଇଥିଲା ତାଙ୍କ ପାଖରେ। ସ୍ୱାଧୀନତା ସଂଗ୍ରାମ, ସମାଜ ସଂସ୍କାର ଓ ସାହିତ୍ୟ ତଥା ସାମ୍ବାଦିକତାର ସମସ୍ତ ବିଭାଗରେ ସେ ପ୍ରବେଶ କରିଛନ୍ତି, ସଫଳ ହୋଇଛନ୍ତି। ସେ ନିଜେ ସାହିତ୍ୟିକ, ବହୁ ସାହିତ୍ୟିକ ସୃଷ୍ଟି କରାଇଛନ୍ତି, ସାହିତ୍ୟପାଇଁ ପୃଷ୍ଠପୋଷକତା ମଧ୍ୟ ତାଙ୍କ ପ୍ରତିଭାର ଅନ୍ୟତମ ବିଭବ। ରାଜନୀତି ଏକ ପଶାପାଲି। ଏଥିରେ ବହୁ ଅମଣିଆ ଘୋଡାଙ୍କୁ ମଣ କରିବାକୁ ହୁଏ, ସେ ଖେଳ ଖେଳିବାକୁ ହେଲେ ନାନା ଅବ୍ୟାପାରରେ ଜଡିତ ହେବାକୁ ହୁଏ। ରାଜନୀତି ଓ ଶାସନ କ୍ଷେତ୍ରରେ ଅନେକ ଟାଉଟରଙ୍କର ମେଳଣ ହୁଏ। ସେମାନଙ୍କ ଥୋମଣିରେ ଲଗାମ ଲଗାଇବାକୁ ଜଣେ ବୃଦ୍ଧ ଟାଉଟରଙ୍କର ଆବଶ୍ୟକତା ରହିଛି। ଡଃ.ମିଶ୍ରଙ୍କ ଉକ୍ତି ସହିତ ମହତାବଙ୍କର ପ୍ରଥମ ଉପନ୍ୟାସ ନୂତନ ଧର୍ମକୁ ଯୋଡିଦେଲେ ଏହିଭଳି ହେବ ଯେ ସାହିତ୍ୟ, ସାମ୍ବାଦିକତା ଓ ଶାସନକୁ ସେ ଏକ ନୂତନ ଧର୍ମ ଭାବରେ ପ୍ରତିଷ୍ଠା କରିଗଲେ, ଯାହା ଏବେ ଚାଲିଛି। ସାମଗ୍ରିକ ଭାବରେ ଡକ୍ଟର ମହତାବଙ୍କୁ ଜାଣିବାକୁ ହେଲେ, ତାଙ୍କ ସୃଷ୍ଟି ସମୂହକୁ ବିଚାର କରିବା ଆବଶ୍ୟକ। ସଂପୃକ୍ତ ଆଲୋଚନାରେ ମହତାବଙ୍କର 'ଟାଉଟର' ଉପନ୍ୟାସ ଉପରେ ଏକ ଦୃଷ୍ଟିପାତ କରାଯାଉଛି।

ଔପନ୍ୟାସିକ ଡଃ.ମହତାବ ସ୍ୱାଧୀନତାର ପ୍ରାକ୍‌କାଳରେ ଚାରିଗୋଟି ଓ ଭାରତ ସ୍ୱାଧୀନ ହେଲାପରେ ଦୁଇଗୋଟି ଏହିପରି ଛଅଗୋଟି ଉପନ୍ୟାସ ରଚନା କରିଛନ୍ତି। ତାଙ୍କର ପ୍ରଥମ ଉପନ୍ୟାସ ନୂତନଧର୍ମ ଠାରୁ ଶେଷ ଉପନ୍ୟାସ '୧୯୭୫' ପର୍ଯ୍ୟନ୍ତ ସବୁଥିରେ ମହତାବଙ୍କ ପ୍ରତିଭାର ଉତ୍ତରଣ ଦେଖାଦେଇଛି। ଆଲୋଚକମାନେ 'ଟାଉଟର'କୁ ଡକ୍ଟର ମହତାବଙ୍କର ଚତୁର୍ଥ ଉପନ୍ୟାସ ଭାବରେ ଉଲ୍ଲେଖ କରିଛନ୍ତି। ଏହି ଉପନ୍ୟାସଟି ଲେଖକ ଅହମ୍ମଦାବାଦ ଫୋର୍ଟ ଜେଲ୍‌ରେ ଲେଖିଥିଲେ। ସେ ୧୯୪୨ରୁ ୧୯୪୫ ପର୍ଯ୍ୟନ୍ତ ଏହି ଜେଲରେ ଥିଲେ। ଜେଲ ରହଣି କାଳରେ ତିନୋଟି କାବ୍ୟ 'ଚାରିଚକ୍ଷୁ', 'ଆତ୍ମଦାନ', 'ଜୀବନସମସ୍ୟା' ଓ ତିନିଗୋଟି ଉପନ୍ୟାସ 'ଟାଉଟର', 'ଅବ୍ୟାପାର' ଓ 'ପ୍ରତିଭା'କୁ ଲେଖିଥିଲେ।

'ଟାଉଟର'କୁ ଡକ୍ଟର ରମାକାନ୍ତ ବେହେରା ମହତାବଜୀଙ୍କର ଚତୁର୍ଥ ଉପନ୍ୟାସ ଭାବରେ ତାଙ୍କ ସଂନ୍ଦର୍ଭରେ ଉଲ୍ଲେଖ କରିଥିଲେ ମଧ୍ୟ ଏହା ମହତାବଙ୍କର ଚତୁର୍ଥ ଉପନ୍ୟାସ ଭାବରେ ଗ୍ରହଣ କରିବାରେ କେତେକ ଅସୁବିଧା ରହିଛି। ବରଂ ଏହା ଡକ୍ଟର ମହତାବଙ୍କର ଦ୍ୱିତୀୟ ଉପନ୍ୟାସ ବୋଲି ମନେହୁଏ। କାରଣ ଏ ଉପନ୍ୟାସର ଭାଷା, ଘଟଣାବଳୀ ଓ ଚରିତ୍ର ଚିତ୍ରଣରୁ ଏହା ୧୯୨୮ ପାଖାପାଖି ସମୟର ବୋଲି ଅନୁମତି ହୁଏ। କାରଣ 'ନୂତନଧର୍ମ', 'ପ୍ରତିଭା' ଓ 'ଅବ୍ୟାପାର' ଲେଖିଲା ପରେ ମହତାବ ଟାଉଟର ଲେଖିବାର ବିଶେଷ କାରଣ ଜଣାପଡୁନାହିଁ। ଏପରି ହୋଇଥାଇପାରେ ଯେ ପୂର୍ବରୁ ଲେଖିଥିବା ଉପନ୍ୟାସକୁ ମହତାବଜୀ ଅହମ୍ମଦାବାଦ ଫୋର୍ଟ ଜେଲରେ ସଜାଇଥାଇ ପାରନ୍ତି କିମ୍ବା ଅଧା ହୋଇଥିବା କାର୍ଯ୍ୟକୁ ଜେଲ୍‌ରେ ସମାପନ କରିଥାଇ ପାରନ୍ତି।

ଡକ୍ଟର ହରେକୃଷ୍ଣ ମହତାବ ଜଣେ ଐତିହାସିକ ତଥା ଇତିହାସ ସଚେତନ ବ୍ୟକ୍ତି। ତାଙ୍କ ଦୈନନ୍ଦିନ କାର୍ଯ୍ୟରେ ସେ ଖୁବ୍ ସଚେତନ ଥିଲେ। ରାଜନୀତି ବା ସାମାଜିକ ଜୀବନରେ ସେ କୌଣସି ସ୍ଥାନରେ ବାଟ ହୁଡିଥିବାର ସୂଚନା ମିଳେନା। ମାତ୍ର ତାଙ୍କ ରଚନାବଳୀର ଐତିହାସିକ ଅନୁଶୀଳନ କଲେ ତାଙ୍କ ସଚେତନ ମନର ଅଭାବ ଦେଖାଯାଏ। ଡଃ. ମହତାବଙ୍କ ସମଗ୍ର ସାହିତ୍ୟ ସୃଷ୍ଟିକୁ ମୂଲ୍ୟାୟନ କରିଥିବା ଡକ୍ଟର ରମାକାନ୍ତ ବେହେରା ତାଙ୍କ ସାହିତ୍ୟ-ସାଧକ ମହତାବ ପୁସ୍ତକରେ ମହତାବଙ୍କ ରଚନାବଳୀର କାଳ ନିର୍ଘଣ୍ଟର ଅଭାବ ଦେଖାଯାଏ। ସେହିପରି ଏକାମ୍ର ଥିଏଟର୍ସ ଆନୁକୁଲ୍ୟରେ ପ୍ରକାଶିତ 'ମହତାବ ପରିକ୍ରମା'

ପୁସ୍ତକରେ ବି ଡଃ.ମହତାବଙ୍କ ସୃଷ୍ଟିର କାଳାନୁକ୍ରମିକ ତାଲିକାର ଅଭାବ ପରିଲକ୍ଷିତ ହୁଏ ।

୧୯୨୭ ମସିହାରେ ମହତାବଙ୍କର ପ୍ରଥମ ଉପନ୍ୟାସ 'ନୂତନ ଧର୍ମ' ଆନନ୍ଦ ଲହରୀ ଉପନ୍ୟାସମାଳାର ତ୍ରୟୋଦଶ ଖଣ୍ଡ ଭାବରେ ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସଟିର ଦ୍ୱିତୀୟ ଭାଗ ଭାରତୀ ପତ୍ରିକା ଫେବୃୟାରୀ ୧୯୩୫ ସଂଖ୍ୟାରେ ପ୍ରକାଶିତ । ଔପନ୍ୟାସିକ ମହତାବ 'ଟାଉଟର'ରେ ତାଙ୍କ ଲେଖନୀର ପରୀକ୍ଷା ନିରୀକ୍ଷା କରି 'ପ୍ରତିଭା' ଓ ଅବ୍ୟାପାରରେ ପୂର୍ଣ୍ଣ ପ୍ରୟୋଗ କରିଛନ୍ତି । ଏହି ଉପନ୍ୟାସର ଘଟଣା ପରିସୀମା ଅସହଯୋଗ ଆନ୍ଦୋଳନର ପର ଓ ଉତ୍କଳମଣିଙ୍କ ସ୍ୱର୍ଗାରୋହଣର ପୂର୍ବବର୍ତ୍ତୀ କାଳ । ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରିଥିବା ମହତାବଙ୍କର ଏହା ପ୍ରସ୍ତୁତି ପର୍ବ ଭାବରେ ଧରି ନିଆଯାଇପାରେ । ସକାଳ ସୂର୍ଯ୍ୟ ସାରା ଦିନର ପାଗ ସଂପର୍କରେ ସୂଚନା ଦେଲାପରି, ମହତାବଙ୍କର ଆଦ୍ୟ ସାହିତ୍ୟିକ ଜୀବନର ଉପନ୍ୟାସ 'ଟାଉଟର' ଏକ ମହାନ୍ ସ୍ରଷ୍ଟାଙ୍କର ଆଗମନୀର ସୂଚନା ଦେଇଥାଏ ।

ଲେଖକମାନେ ଅସତର୍କ ଭାବରେ ଅନେକ ଘଟଣା ଛାଡି ଯାଇଥାନ୍ତି ତାହା ଲେଖାର ପୃଷ୍ଠଭୂମି ନିର୍ଣ୍ଣୟରେ ସହାୟକ ହୋଇଥାଏ । ସେ ଦୃଷ୍ଟିରୁ ଏ ଉପନ୍ୟାସକୁ ପୃଷ୍ଠଭୂମି ନିର୍ଣ୍ଣୟ ପାଇଁ ଉପଯୋଗ କରାଯାଇପାରେ । ଗାନ୍ଧିଜୀ ଓଡ଼ିଶାକୁ ୧୯୨୧ରେ ଆସିଲା ପରେ ଓଡ଼ିଶାରେ ଜାତୀୟ ସଂଗ୍ରାମର ଧାରା ପରିବର୍ତ୍ତନ ହୋଇଥିଲା । ପୂର୍ବରୁ ଓଡ଼ିଶାର ଏକତ୍ରୀକରଣ ପାଇଁ ଚାଲିଥିଲା ସଂଗ୍ରାମ ସହିତ ସର୍ବଭାରତୀୟ ଆନ୍ଦୋଳନ ମିଶିଯିବାରୁ ସତ୍ୟବାଦୀର ସାଧକ ଶ୍ରେଣୀ ଗାନ୍ଧିଜୀଙ୍କ ଧାରାରେ ଗତିକଲେ । ମହାତ୍ମା ଗାନ୍ଧିଙ୍କର ଆନ୍ଦୋଳନର ଲକ୍ଷ୍ୟ କେବଳ ଇଂରେଜମାନଙ୍କୁ ଭାରତରୁ ବିତାଡିତ କରିବା ନୁହେଁ, ତା ସହିତ ଭାରତୀୟ ଲୋକମାନଙ୍କର ସାମାଜିକ ଓ ଆର୍ଥନୀତିକ ଉନ୍ନତି ଆବଶ୍ୟକ । ସେଥିପାଇଁ ଅସହଯୋଗ ଆନ୍ଦୋଳନ ସହିତ ଗ୍ରାମ ବିକାଶ ଓ ଚରଖା ଆନ୍ଦୋଳନ ଚାଲି ରହିଥିଲା । ଶିକ୍ଷିତ ଲୋକ ଓ ନେତାମାନଙ୍କୁ ବାପୁଜୀଙ୍କର ଆହ୍ୱାନ ଥିଲା 'ଗାଁକୁ ଫେରିଚାଲ' । ଭାରତ ଗୋଟିଏ ଗ୍ରାମବହୁଳ ଦେଶ । ତେଣୁ ଭାରତର ପରିବର୍ତ୍ତନ ପାଇଁ ଗ୍ରାମର ବିକାଶ ଏକାନ୍ତ ଆବଶ୍ୟକ । ପୁଣି ଗ୍ରାମର ବିକାଶ କରିବାକୁ ହେଲେ ଗ୍ରାମ୍ୟ ବିବାଦର ସାମଧାନ ଓ ଗ୍ରାମବାସୀମାନେ ମିଳିମିଶି ଚଳିବା ଦରକାର । ଗାନ୍ଧିଜୀଙ୍କର ଏହି ଡାକରାକୁ ମହତାବଜୀ ଉପନ୍ୟାସରେ

ରୂପାୟନ କରିବାକୁ ପ୍ରୟାସ କରିଛନ୍ତି। 'ଟାଉଟର' ଉପନ୍ୟାସର ଶିକ୍ଷକ ରାମଚନ୍ଦ୍ର ମହାପାତ୍ର ମହତାବଙ୍କ ସ୍ୱପ୍ନର ପ୍ରଥମ ଚରିତ୍ର ଯାହାର ସମଗ୍ର ଜୀବନ କେବଳ ଆଦର୍ଶପାଇଁ ଉତ୍ସର୍ଗୀକୃତ।

'ଟାଉଟର' ଉପନ୍ୟାସର କେତେକ ଘଟଣା ଓ ବକ୍ତବ୍ୟକୁ ବର୍ତ୍ତମାନ ଆଲୋଚନା କରାଯାଉ ୨୨ ପୃଷ୍ଠାରେ ବାସୁଦେବ ରାମଚନ୍ଦ୍ରଙ୍କୁ କହୁଛନ୍ତି- କିହୋ, ''ତୁମକୁ ଗାନ୍ଧି ହାଓ୍ୱା ଲାଗିଲାଣିକି?'' ରାମଚନ୍ଦ୍ର ଉତ୍ତରରେ କହୁଛନ୍ତି- ''ନା' ଭଗବାନ ସେ ସୁଦିନ ମୋତେ ଆଜି ସୁଦ୍ଧା ଦେଇନାହାନ୍ତି। ତେବେ ମୁଁ ଦେଖୁଛି କ୍ରମଶଃ ଗାଁରେ ଯେପରି ଅଧର୍ମ ବଢ଼ିଗଲାଣି, ଆଉ ଗରିବଙ୍କ ଉପରେ ଅତ୍ୟାଚାର ବଢ଼ିଗଲାଣି ମୋର କିଛି କରିବା କର୍ତ୍ତବ୍ୟ। ଫଳ କିଛି ହେଉ ବା ନହେଉ ସେ ଦିଗରେ ମୋର କିଛି କାମ କରିବା ଆବଶ୍ୟକ।'' (ପୃ.୨୨) ଏହିଭଳି ଉପନ୍ୟାସର ବିଭିନ୍ନ ସ୍ଥାନରେ ଗାଁରେ ଅତ୍ୟାଚାର ଓ ଲୋକମାନଙ୍କର ଦୟନୀୟ ଜୀବନର ଚିତ୍ର ରହିଛି। ସମ୍ଭବତଃ ସେ ସମୟରେ ଗାନ୍ଧିଜୀଙ୍କର ଆହ୍ୱାନର ପ୍ରଭାବ ଏଥିରେ ପ୍ରତିଫଳିତ। ସେହି ପରିବେଶର ସୂଚନା ୨୪ ପୃଷ୍ଠାରେ ଶ୍ରୀରାମ ରାମଚନ୍ଦ୍ରଙ୍କ ସଂପର୍କରେ କହୁଛନ୍ତି- 'ସେ ଗୋଟିଏ ସଦ୍‌ମାର୍ଗ ଧରିବେ ବୋଲି କହୁଛନ୍ତି। x x x ତା ଛଡା ଆଜିକାଲି ଗୋଟିଏ ନୂଆ ହାଓ୍ୱା ଆସିଛି ଲୋକ ସବୁ ଚାରିଆଡ଼େ ଯାଉଛନ୍ତି। ପୁଣି ୨୬ ପୃଷ୍ଠାରେ ରାମଚନ୍ଦ୍ର ମହାପାତ୍ର ସତ୍ୟାବାଦୀରେ ଗୋପବନ୍ଧୁଙ୍କଠାରୁ ଗ୍ରାମ୍ୟ ଶିକ୍ଷା ପାଇଁ ଯାଇଛନ୍ତି।' ଏହା ନିଶ୍ଚୟ ଗୋପବନ୍ଧୁଙ୍କ ପରଲୋକ ଗମନ ପୂର୍ବର ଚିତ୍ର। ଔପନ୍ୟାସିକ ସତ୍ୟବାଦୀ ବନ ବିଦ୍ୟାଳୟର ଏକ ମନୋମୁଗ୍ଧକର ଚିତ୍ର ପ୍ରଦାନ କରିଛନ୍ତି। ସେ ବର୍ଣ୍ଣନାରୁ ଆଉ ଏକ ପ୍ରମାଣ ମିଳୁଛି। ସେହି ବର୍ଣ୍ଣନା ପ୍ରସଙ୍ଗରେ ୩୦ପୃଷ୍ଠାରେ ଅଛି ଯେ- 'ଆଜିକି କୋଡିଏ ବର୍ଷ ପୂର୍ବେ ଗୋପବନ୍ଧୁ କଳ୍ପନା କଲେ ସେହି ଛୁରୀଅନା ବଣରେ ନିତ ତପସ୍ୟା ଫଳରେ ଏପରି ଏକ ଶକ୍ତି ଜାଗ୍ରତ କରାଇବେ ଯେଉଁ ଶକ୍ତି ସମଗ୍ର ଉତ୍କଳ ବ୍ୟାପିଯାଇପାରେ।' ଅର୍ଥାତ୍ ସତ୍ୟବାଦୀ ବନ ବିଦ୍ୟାଳୟ ଖ୍ରୀ:୧୯୦୯ରେ ପ୍ରତିଷ୍ଠା କରାଗଲା। ଏଣୁ ଉପନ୍ୟାସର ଚରିତ୍ର ରାମଚନ୍ଦ୍ର ମହାପାତ୍ର ୧୯୨୮ ମସିହା ବେଳକୁ ସତ୍ୟବାଦୀ ଯାଇଛନ୍ତି। ୧୯୨୮ ନେତ୍ରଉତ୍ସବ ଦିନ ଗୋପବନ୍ଧୁଙ୍କ ମହାପ୍ରୟାଣ ହୁଏ। ଗୋପବନ୍ଧୁଙ୍କ ମହାପ୍ରୟାଣର କୌଣସି ସୂଚନା ନଥିବାରୁ ଏହା ନିଶ୍ଚୟ ୧୯୨୮ ଜୁନ୍‌ର ପୂର୍ବରୁ ଲେଖାଯାଇଛି।

'ଟାଉଟର' ଉପନ୍ୟାସର ମୁଖ୍ୟ ଚରିତ୍ର ଭାବରେ ଉପସ୍ଥିତ ହୋଇଛନ୍ତି 'କୃଷ୍ଣପ୍ରସାଦ'। ସେ ଶେରଗଡ ଆସି ଭାଷଣ ଦେବାବେଳେ ଗାନ୍ଧି ଆନ୍ଦୋଳନ ଓ କଂଗ୍ରେସର ପ୍ରତିଷ୍ଠା ସଂପର୍କରେ ଆଲୋଚନା କରିଛନ୍ତି। ସେ ଭାଷଣରେ କହିଛନ୍ତି ଯେ କଂଗ୍ରେସ ଗଠନର ୪୪ ବର୍ଷ ହୋଇଛି ଅର୍ଥାତ୍ ୧୯୨୮ ମସିହାରେ କୃଷ୍ଣପ୍ରସାଦ ଶେରଗଡରେ ଆସି ଭାଷଣ ଦେଇଛନ୍ତି।

ଏଣୁ ଉପନ୍ୟାସର ଆମ୍ଭିକ ଅନୁଶୀଳନକୁ ବିଚାର କଲେ ପ୍ରତ୍ୟୟ ହୁଏ ଯେ ଏହି ଉପନ୍ୟାସଟି ଡଃ.ମହାତାବ ୧୯୨୮ ମସିହା ବେଳକୁ ଲେଖିଥିଲେ ଓ ବିଭିନ୍ନ ରାଜନୈତିକ ଆନ୍ଦୋଳନ ଓ ଅନ୍ୟାନ୍ୟ କାର୍ଯ୍ୟ ଯୋଗୁଁ ବୋଧହୁଏ ପ୍ରକାଶ କରିବା ପାଇଁ ସୁଯୋଗ ପାଇପାରି ନାହାନ୍ତି। ଅହମ୍ମଦାବାଦ ଫୋର୍ଟ ଜେଲ୍‌ରେ ବିଭିନ୍ନ ସୃଷ୍ଟି ନିର୍ମାଣ ପରେ ଏହାକୁ ସୁବିଧା ଦେଖି ପରେ ପ୍ରକାଶ କରିଛନ୍ତି।

'ଟାଉଟର' ଉପନ୍ୟାସରେ ତିନି ପ୍ରକାର ଚରିତ୍ରର ଉପସ୍ଥିତି ଦେଖାଯାଏ। ପ୍ରଥମଶ୍ରେଣୀ ହେଲେ- ହର ପାଣିଗ୍ରାହୀ, ବାସୁଦେବ ପ୍ରଧାନ ଓ ପ୍ରହ୍ଲାଦ, ଭଳି ଗାଁ ମହାଜନ ସାହୁକାର ଶ୍ରେଣୀର ତଥା ଗ୍ରାମ ଟାଉଟର ଶ୍ରେଣୀ। ଏମାନେ ଧନଧାନ୍ୟ ଓ ପ୍ରତିପତ୍ତିଶାଳୀ ମାତ୍ର ଏମାନେ ହିଂସ୍ର ନୁହନ୍ତି। ଟଙ୍କା ଧାନ ସୁଧ ଲଗାଇବା ଏମାନଙ୍କର ପେଶା ମାତ୍ର ଲୋକମାନଙ୍କୁ ବଞ୍ଚାଇ ରଖି ସୁଧ ଆଦାୟ କରିବା ଏମାନଙ୍କର ଅଭ୍ୟାସ। ଏଇମାନେ ହିଁ ନିଜର ପ୍ରଭାବ ବଢାଏ ରଖିବା ପାଇଁ ସାଜିଛନ୍ତି ଗାଁ ଟାଉଟର। ଦ୍ୱିତୀୟ ଶ୍ରେଣୀର ଚରିତ୍ରମାନେ ହେଲେ ରାମଚନ୍ଦ୍ର ମହାପାତ୍ର (ଶିକ୍ଷକ) କୃଷ୍ଣପ୍ରସାଦ (ଦେଶ ସେବକ) ଯେଉଁମାନେ ଆଦର୍ଶ ପାଇଁ ଜୀବନ ବିନିଯୋଗ କରିଥାନ୍ତି। ଔପନାସିକ ମହତାବ ନିଜକୁ କୃଷ୍ଣପ୍ରସାଦ ଭୂମିକାରେ ଉପସ୍ଥାପିତ କରିଛନ୍ତି।

ଅନ୍ୟ ଗୋଟିଏ ଟାଇପ୍‌ର ଚରିତ୍ର ହେଲେ ଗ୍ରାମର ଅଭାବଗ୍ରସ୍ତ ଜନତା। ଏମାନେ ଅପାଠୁଆ, ଅଭାବଗ୍ରସ୍ତ ମାତ୍ର ଚିନ୍ତାଶୂନ୍ୟ ଦାୟିତ୍ୱଶୂନ୍ୟ। ଏଇ ଚରିତ୍ରମାନଙ୍କୁ ଶୋଷଣ କରିବା ପାଇଁ ଓକିଲ ଜାମିନୀ ବାବୁ ବା ଗ୍ରାମ୍ୟ ଦଲାଲ କୃଷ୍ଣମହାନ୍ତି ଭଳି ଲୋକ ଲାଗିପଡନ୍ତି। ଏମାନେ ଲୋକମାନଙ୍କର ଶତ୍ରୁ। ସମାଜର ବିଷବୃକ୍ଷ। ଏ ଶ୍ରେଣୀର ଲୋକମାନଙ୍କୁ ଲେଖକ କେବେହେଲେ ଶ୍ରଦ୍ଧା କରିନାହାନ୍ତି। ଔପନାସିକ ମହତାବଙ୍କର ସ୍ୱପ୍ନର ଚରିତ୍ର ହେଉଛି ବାଉରିଆ, ଡଃ. ମହତାବ ଚାହିଁଥିଲେ ବାଉରିଆ ଭଳି ଚରିତ୍ରମାନେ ଆସିଲେ ସମାଜର ପରିବର୍ତ୍ତନ

ସମ୍ଭବ ହୋଇପାରିବ। ଗ୍ରାମ୍ୟ ରାଜନୀତିର ବଶବର୍ତ୍ତୀ ହୋଇ ସେ ତାର ଗ୍ରହିତା ମା ବୁଢ଼ୀକୁ ହଇରାଣ କରିଥାଇପାରେ, ଅଳସୁଆମି ଯୋଗୁ କର୍ତ୍ତବ୍ୟରେ ପ୍ରଥମେ ପ୍ରଥମେ ହେଳା କରିଥାଇପାରେ ମାତ୍ର ଯେତେବେଳେ ସେ ରାମଚନ୍ଦ୍ର ମହାପାତ୍ରଙ୍କ ଭଳି ଶିକ୍ଷକ ତଥା ଗୋପବନ୍ଧୁ ଶିଷ୍ୟଙ୍କ ସହଯୋଗ ପାଇଛି ସେତେବେଳେ ତାର ଆଳସ୍ୟର ଘୋଡଣି ଖୋଲିଯାଇଛି। ସମସ୍ତ କାମକୁ ସେ ମଥାପାତି ସହି ନେଇଛି। ଏପରିକି ଅନୁତପ୍ତ ହୋଇ ବୁଢ଼ିପାଖକୁ ଶେଷ ସମୟରେ ସାକ୍ଷାତ କରିଛି। ସେ ପରେ ଆସି ସୂତାକଟା, ଅରଟ ମରାମତି କରିଛି। ଶେଷରେ ସେ ମିଛ କେଶ୍‌ରେ ଜେଲ ଯାଇଛି ତଥାପି ରାମଚନ୍ଦ୍ର ମହାପାତ୍ରଙ୍କୁ ଦୋଷ ଦେଇନି।

'ଟାଉଟର' ଉପନ୍ୟାସ ମହତାବ ପ୍ରତିଭାର ଏକ ଆଦ୍ୟ ଆଲେଖ୍ୟ ମାତ୍ର ଏହା ଠିକ୍ ଭାବରେ ଆଲୋଚନା ପରିସରଭୁକ୍ତ ନ ହୋଇ ପାରିଥିବାରୁ ଏହାର ସ୍ୱାଦୁ ସମସ୍ତ ପାଠକମାନଙ୍କ ପାଖରେ ନିର୍ଣ୍ଣିତ ହୋଇ ପାରିନାହିଁ। କେତେକ ଆଲୋଚକ ଏହାର ମର୍ମବାଣୀ ଉଦ୍‌ଘାଟନ ନକରି ଏହା ଏକ ପ୍ରଚାରଧର୍ମୀ ଉପନ୍ୟାସ ବୋଲି ଅଭିଯୋଗ ଆଣିଛନ୍ତି। ବାସ୍ତବରେ ଏଥିରେ ସେପରି ବିଶେଷ କିଛି ନାହିଁ। ବରଂ ଜଣେ ଲେଖକର ସ୍ୱପ୍ନ ହିଁ ରହିଛି। ଏ ଉପନ୍ୟାସ ଆହୁରୀ ଗଭୀର ଅନୁଶୀଳନର ଅପେକ୍ଷା ରଖେ, ଯେଉଁଥିରେ ମହତାବ ପ୍ରତିଭାର ଆଦ୍ୟସ୍ଫୁରଣ ଉଦ୍‌ଘାଟିତ ହୋଇପାରିବ।

ବରିଷ୍ଠ ଅଧ୍ୟାପକ, ଓଡ଼ିଆ ବିଭାଗ
ସରକାରୀ ସାନ୍ଧ୍ୟ ମହାବିଦ୍ୟାଳୟ, ରାଉରକେଲା



# ବିକ୍ଷିପ୍ତ ସ୍ମୃତି

## ଶ୍ରୀ ଗୁଣମଣି ମହାପାତ୍ର

ମହତାବ ବାବୁଙ୍କ ସହ ମୋର ପ୍ରଥମ ପରିଚୟ ୧୯୪୬ ମସିହା ଶେଷଭାଗରେ। ସେତେବେଳେ ସେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥାନ୍ତି ଓ କଟକରେ ରହୁଥାନ୍ତି। ସ୍ୱର୍ଗତଃ ମୂରଲୀଧର ଯେନା ମୋତେ ତାଙ୍କର ଭିଣୋଇ ହିସାବରେ ବାବୁଙ୍କ ସହ ପରିଚୟ କରାଇ ଦେଇଥିଲେ। ଆମେ ମହତାବ ବାବୁଙ୍କୁ କେବଳ ବାବୁ ବୋଲି କହୁ। ସେ ସମୟରେ କଟକ ସହର ଡାକବାଜୀ ଯନ୍ତ୍ରର ଗର୍ଜନରେ ପଡୁଥାଏ ଉଠୁଥାଏ। ସରକାର ବିରୋଧୀ ସଭାସମିତିମାନ ପ୍ରାୟ ପ୍ରତ୍ୟେକ ଦିନ ହେଉଥାଏ। ପ୍ରଥମ ବିରୋଧ- ଧାନର ସର୍ବନିମ୍ନ ସରକାରୀ ମୂଲ୍ୟ ନିର୍ଦ୍ଧାରଣ। ଯଦିଓ ଚାଷୀମାନେ ଖୁସିଥାନ୍ତି କଟକ ସହରବାସୀ ଓ ଚାକିରିଆ ଗୋଷ୍ଠିଙ୍କୁ ଏହା ବାଧୁଥାଏ। ୨ୟ କଥା ପ୍ରସ୍ତାବିତ ହିରାକୁଦ ବନ୍ଧ ଯୋଜନା ଓ ୩ୟ-କଟକରୁ ଭୁବନେଶ୍ୱର ରାଜଧାନୀ ଉଠିଯିବା ପ୍ରସ୍ତାବ। ହିରାକୁଦ ଆନ୍ଦୋଳନର ପୁରୋଧା ପ୍ରମୁଖ ବକ୍ତା ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ରଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ଶୁଣିବାକୁ ବୁଦ୍ଧିଜିବୀମାନେ ସଭାରେ ବେଶ୍ ରୁଣ୍ଡ ହୁଅନ୍ତି। ଚାଉଳ ଦର ବୃଦ୍ଧି ଓ ରାଜଧାନୀ ଭୁବନେଶ୍ୱରକୁ ଉଠିଯିବା ପ୍ରସ୍ତାବ ଉପରେ ଗଳି ଗଳିରେ ଆଲୋଚନା ହେଉଥାଏ। ବିଶେଷତଃ ଚା ଜଳଖିଆ ଦୋକାନ ମାନଙ୍କରେ। ଏସବୁ ଯୁକ୍ତିତର୍କ ହଲ୍ଲାଚଲ୍ଲା ମୋତେ ଭଲ ଲାଗୁନଥାଏ। ତେଣୁ ବାବୁଙ୍କ ସଙ୍ଗେ ପରିଚୟ ହେବାମାତ୍ରେ ମୁଁ ଏହି ତିନୋଟି ବିଷୟ ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରି ପଚାରିଥିଲି-ଲୋକେ ତ ଏସବୁକୁ ଏତେ ବିରୋଧ କରୁଛନ୍ତି। ଆପଣ କାହିଁକି ଜିଦ୍‌ଧରି ଏହାକୁ କାର୍ଯ୍ୟକାରୀ କରୁଛନ୍ତି। ଏହା ଉତ୍ତରରେ ସେ ସ୍ନେହଭରା କଣ୍ଠରେ ହସି ହସି କରିଥିଲେ- ଗୁଣମଣି, ତମେ ବର୍ତ୍ତମାନ ପିଲା। (ମୋର ସେତେବେଳେ ୧୮ ବର୍ଷ ପୂରି ନଥାଏ)। ତେଣୁ ବର୍ତ୍ତମାନ ତମେ ଏସବୁ ବୁଝିପାରିବ ନାହିଁ। ଏକାର୍ଯ୍ୟ ଗୁଡିକ ଠିକ୍ ବୋଲି ମୋର ହୃଦ୍‌ବୋଧ ହୋଇଛି। ଇତିହାସ କହିବ ମୁଁ ଠିକ୍ କରୁଛି କି ଭୁଲ କରୁଛି।

ଆଜି ନିଶ୍ଚିତଭାବେ ଇତିହାସ କହୁଛି ସେତେବେଳେର ମହତାବ୍‌ଙ୍କର ଦୂରଦୃଷ୍ଟି ହିଁ ଓଡ଼ିଶାର ପ୍ରଗତି ତଥା ଓଡ଼ିଆ ଚାଷୀର ଆର୍ଥିକ ଉନ୍ନତିର ମୂଳଦୁଆ।

ତାଙ୍କର ଅନ୍ୟ ଦୂରଦୃଷ୍ଟିର ଉଦାହରଣ ହେଉଛି- ମୁକ୍ତ ବା ଉଦାରୀକରଣ ଅର୍ଥନୀତିରେ ଆଞ୍ଚଳିକ କୃଷି ଉତ୍ପାଦନ ଭିତ୍ତିକ ଶିଳ୍ପ ପ୍ରତିଷ୍ଠା। ଦେଶରେ ସେତେବେଳେ

ମିଶ୍ରିତ ଅର୍ଥନୀତି ପ୍ରବର୍ତ୍ତନ ହୋଇଥାଏ। ସରକାରୀ ଉଦ୍ୟୋଗ ଓ ଘରୋଇ ଉଦ୍ୟୋଗର ପରିସର ନିର୍ଦ୍ଧାରଣ କରାଯାଇଥାଏ। କିନ୍ତୁ ବାସ୍ତବରେ ଘରୋଇ ଉଦ୍ୟୋଗ ଉପରେ ବିଭିନ୍ନ ପ୍ରକାର ଅହେତୁକ କଟକଣା ଜାରି ଥାଏ ଯେ ତା କେବଳ ସରକାରୀ କର୍ମକର୍ତ୍ତାଙ୍କ ଦୁର୍ନୀତି ବଢ଼ାଉଥାଏ। ଘରୋଇ ଉଦ୍ୟୋଗରେ ପୁଞ୍ଜିଲଗାଣ ଆଶାନୁରୂପ ବୃଦ୍ଧି ପାଇଲା ନାହିଁ ଓ ଅଭିବୃଦ୍ଧି ମଧ୍ୟ ହେଲାନାହିଁ। ସେ ଯୁକ୍ତି କରୁଥିଲେ ଘରୋଇ ଉଦ୍ୟୋଗ ଗୁଡ଼ିକୁ ଅହେତୁକ ସରକାରୀ ନିୟନ୍ତ୍ରଣ ମୁକ୍ତ କରାଯାଉ। ତା'ଛଡ଼ା ତାଙ୍କ ମତରେ ଭାରତର କୃଷି ଅର୍ଥନୀତିକୁ ଶିଳ୍ପ ଅର୍ଥନୀତିରେ ପରିଣତ କରି ଦେଶର ସମୃଦ୍ଧି ସାଧନ କରିବାକୁ ହେଲେ କୃଷକକୁ ତା'ର କୃଷି କ୍ଷେତ୍ର ନିକଟରେ ତାର ଉତ୍ପାଦନ ଭିତ୍ତିକ ଶିଳ୍ପ ପ୍ରତିଷ୍ଠା ପାଇଁ ପ୍ରୋତ୍ସାହନ ଦେବା ଉଚିତ। କେବଳ ବଡ଼ବଡ଼ ଶିଳ୍ପ ପ୍ରତିଷ୍ଠା ଦେଶର ସମୁହ ଅର୍ଥନୈତିକ ବିକାଶ କରିପାରିବ ନାହିଁ। ଆଞ୍ଚଳିକ କୃଷି ଭିତ୍ତିକ ଶିଳ୍ପର ବିକାଶରେ ଦେଶର ସମୁହ ଅର୍ଥନୈତିକ ସମୃଦ୍ଧି ସମ୍ଭବ। ତାଙ୍କର ଏହି ମତକୁ ସେ ୧୯୫୧ ମସିହାରେ କେନ୍ଦ୍ରରେ ଶିଳ୍ପମନ୍ତ୍ରୀ ଥିଲାବେଳେ ପ୍ରଧାନମନ୍ତ୍ରୀଙ୍କୁ ଜଣେଇଥିଲେ ଓ ତାଙ୍କର ପରାମର୍ଶ କ୍ରମେ ଯୋଜନା କମିଶନର ଉପାଧ୍ୟକ୍ଷ ଓ ଅନ୍ୟ ସଭ୍ୟମାନଙ୍କୁ ଭେଟି ବ୍ୟକ୍ତିଗତ ଆଲୋଚନା ମଧ୍ୟ କରିଥିଲେ। କିନ୍ତୁ ଦୁର୍ଭାଗ୍ୟ କଥା ସେତେବେଳେ ତାହା ଗ୍ରହଣୀୟ ହୋଇନଥିଲା। ଦେଶର ଶିଳ୍ପନୀତି ଓ ଉନ୍ନୟନ ଯୋଜନାମାନ ନେହେରୁଙ୍କ ଇଙ୍ଗିତରେ ଆମେରିକୀୟ ଢ଼ାଞ୍ଚାରେ ଚାଲିଲା। ତାଙ୍କର ପ୍ରଧାନମନ୍ତ୍ରୀଙ୍କ ସହ ଏହି ବିରୋଧୀ ମନୋଭାବ ଯୋଗୁଁ ୧୯୫୨ ମସିହାରେ କେନ୍ଦ୍ର ମନ୍ତ୍ରୀମଣ୍ଡଳରୁ ତାଙ୍କୁ ବାଦ୍ ଦିଆଗଲା। କିନ୍ତୁ ଦୀର୍ଘ ୪୦ବର୍ଷ ପରେ, ବର୍ତ୍ତମାନର ସରକାର ତାଙ୍କର ସେହି ୧୯୫୧ମତବାଦ ବା ନୀତିକୁ ଗ୍ରହଣ କରି ମୁକ୍ତ ବା ଉଦାରୀକରଣ ଅର୍ଥନୀତି ପ୍ରବର୍ତ୍ତନ କରିଛନ୍ତି ତଥା ଆଞ୍ଚଳିକ ଉତ୍ପାଦନ ଆଧାରିତ କୃଷି ଭିତ୍ତିକ ଶିଳ୍ପ ପ୍ରତିଷ୍ଠା ପାଇଁ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଆମନ୍ତ୍ରଣ କରିଛନ୍ତି।

ତେଣୁ ହେ ଯୋଗୀ, ହେ ଇତିହାସ ପୁରୁଷ, ହେ ଦୂରଦ୍ରଷ୍ଟା, ହେ ମୋର ପ୍ରିୟ ଓ ପୂଜ୍ୟ ନେତା ଆଜି ଆପଣ ସ୍ୱର୍ଗରେ ଥାଇ ନିଶ୍ଚିତ ଆନନ୍ଦିତ ହେଉଥିବେ ଯେ ଆପଣଙ୍କ ଦେଶବାସୀ ବିଳମ୍ବରେ ହେଲେ ମଧ୍ୟ ଆପଣଙ୍କ ନୀତିକୁ କାର୍ଯ୍ୟକାରୀ କରୁଛନ୍ତି। ଏହି ବିଳମ୍ବ ପାଇଁ ଆପଣ ଆପଣଙ୍କର ଉଦାରତା ବଳରେ ଆମକୁ କ୍ଷମା ଦେବେ। ଏତିକି ମୋର ଅଳି।



ଉଦିତ ନଗର -

- ରାଉରକେଲା -

# କାନ୍ତକବି ଓ ମହତାବ

**ଗୌରଚନ୍ଦ୍ର ମହାପାତ୍ର**

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ଓ ଉତ୍କଳକେଶରୀ ହରେକୃଷ୍ଣ ମହତାବ, ଉଭୟ ଆଜି ଦିବଂଗତ। ଉଭୟ ଏଇ ଓଡ଼ିଶାର ଏକ ଅଞ୍ଚଳର ଲୋକ। ଦୁହେଁ ସମସାମୟିକ ହେଲେହେଁ କାନ୍ତକବି ଲକ୍ଷ୍ମୀକାନ୍ତ ବୟୋଜ୍ୟେଷ୍ଠ। ଲକ୍ଷ୍ମୀକାନ୍ତଙ୍କର ସାନଭାଇ ସୀତାକାନ୍ତ, ମହତାବଙ୍କର ସହପାଠୀ ଥିଲେ। ସୀତାକାନ୍ତ ମହତାବଙ୍କୁ 'ରାଜା' ବୋଲି ସମ୍ବୋଧନ କରୁଥିବାବେଳେ ମହତାବ ସୀତାକାନ୍ତଙ୍କୁ ତାଙ୍କ ଡାକନାମ 'ବୈରାଗୀ' ବୋଲି କହି ସମ୍ବୋଧନ କରିଥାନ୍ତି। ଏଥିରୁ ଉଭୟଙ୍କର ସଖ୍ୟସୂଚୀତ ଥିଲେହେଁ ପରବର୍ତ୍ତୀ କାଳରେ ଦୁହେଁ ଭିନ୍ନ ରାଜନୈତିକ ଗୋଷ୍ଠୀଭୁକ୍ତ ହୋଇଥିଲେ। କାନ୍ତକବି ଓ ମହତାବଙ୍କ ପରିବାରର ଆଭିଜାତ୍ୟ ଥିଲା। ଦୁଇ ପରିବାର ସେତେବେଳକାର ସଙ୍ଗତି ସମ୍ପନ୍ନ, ସ୍ୱଚ୍ଛଳ ଓ ଖାନଦାନ ଗୋଷ୍ଠୀର ବୋଲି ଜଣାଶୁଣା। କିନ୍ତୁ ମହତାବ କଂଗ୍ରେସ ସମର୍ଥକ ଥିବା ସମୟରେ କାନ୍ତକବିଙ୍କ ପରିବାର ସେତେବେଳେ କନିକା ଦଳର ଅନ୍ତର୍ଭୁକ୍ତ। କନିକା ଦଳ ଥିଲେ ବ୍ରିଟିଶ ସମର୍ଥକ। ରାଜନୀତିରେ ଭିନ୍ନଗୋଷ୍ଠୀଭୁକ୍ତ ଥିଲେ ହେଁ, ସୀତାକାନ୍ତଙ୍କ ସହ ବନ୍ଧୁତା ଅତୁଟ ଥିଲା। ମୋର ମନେ ଅଛି ମହତାବ ଅନେକଥର ସୀତାକାନ୍ତ ଓ ଲକ୍ଷ୍ମୀକାନ୍ତଙ୍କ ସହ ତାଙ୍କ ଘରେ ଆଲୋଚନାରତ ଥାଆନ୍ତି। ମହତାବଙ୍କ ସମ୍ମାନାର୍ଥେ ମଧ୍ୟ ସୀତାକାନ୍ତ ଭୋଜିର ଆୟୋଜନ କରନ୍ତି। ଥରେ କାନ୍ତକବିଙ୍କ ବାସଭବନରେ ଭୋଜି ଖାଉଥିବାବେଳେ ସୀତାକାନ୍ତ କହିଲେ- 'ରାଜା' ତମେ ନୀଳକଣ୍ଠବାବୁ ଓ ଗୋଦାବରୀଶ ବାବୁ, ତିନିହେଁ ମନ୍ତ୍ରୀ ହେଲେ ଓଡ଼ିଶାର ଭାଗ୍ୟ ବଦଳି ଯାଆନ୍ତା। ଉତ୍ତରରେ ମହତାବ କହିଥିଲେ- କିହୋ, ଖାଲି ବଡବଡ଼ିଆଙ୍କୁ ଥୋଇ ଦେଲେ କ'ଣ ହେବ? ନିଜ ନିଜ ଭିତରେ 'ଟିମ୍ ସ୍ପିରିଟ' ନଥିଲେ କାମ ଚଳିବ ନାହିଁ। ଏକଥା ଏଠି ଲେଖିବାର ତାତ୍ପର୍ଯ୍ୟ ହେଉଛି- ନିର୍ବାଚନରେ ଉଭୟ ପରିବାର ପ୍ରତିଦ୍ୱନ୍ଦ୍ୱିତାରେ ଅବତୀର୍ଣ୍ଣ ହୋଇଥିଲେ ହେଁ, କାନ୍ତକବିଙ୍କ ପରିବାର ସହ ସଦଭାବ ଅତୁଟ ରହିଥିଲା। ଖୋଲାଖୋଲି ଆନ୍ତରିକ ଆଳାପ ଆଲୋଚନା ମଧ୍ୟ ଚାଲିଥିଲା।

ପୁଣି ଯେତେବେଳେ ବାଲେଶ୍ୱରରୁ 'ପ୍ରଜାତନ୍ତ୍ର' ପ୍ରକାଶିତ ହେଉଥିଲା, ସେଥିରେ ଲକ୍ଷ୍ମୀକାନ୍ତଙ୍କର 'ପଞ୍ଚାମୃତ' ନାଟିକା ସ୍ଥାନ ପାଇଥିଲା। ବ୍ୟଙ୍ଗ, ବିଦ୍ରୂପ ଓ ବକ୍ରୋକ୍ତିପୂର୍ଣ୍ଣ ଏହି ନାଟିକାଟି ସେତେବେଳେ ଓଡ଼ିଶାରେ ଚହଳ ସୃଷ୍ଟି କରିଥିଲା। ଏହି 'ପଞ୍ଚାମୃତ'ର ଲେଖକ କିଏ, ଏହି କଥାର ଆଲୋଚନା ସମସ୍ତଙ୍କ ମନରେ ବିସ୍ମୟ ଆଣିଦେଇଥିଲା। ଲକ୍ଷ୍ମୀକାନ୍ତଙ୍କୁ ସେହି ନାଟିକାର ରଚୟିତା ବୋଲି କେହି ଘୁଣାକ୍ଷରେ ସନ୍ଦେହ କରୁନଥିଲେ। ପ୍ରଥମତଃ ଲକ୍ଷ୍ମୀକାନ୍ତ ଥିଲେ ଭିନ୍ନଗୋଷ୍ଠୀର ଲୋକ। ଦ୍ୱିତୀୟରେ 'ପଞ୍ଚାମୃତ'ରେ ଲକ୍ଷ୍ମୀକାନ୍ତଙ୍କର ଦୁଇଭାଇ ସୀତାକାନ୍ତ ଓ କମଳାକାନ୍ତ ମଧ୍ୟ ବ୍ୟଙ୍ଗ ବିଦ୍ରୂପର ଶରବ୍ୟ ହୋଇଥିଲେ। ସେତେବେଳେ ସମ୍ଭବତଃ ମହତାବ ଓ ଲକ୍ଷ୍ମୀକାନ୍ତଙ୍କ ବ୍ୟତୀତ, 'ପଞ୍ଚାମୃତ'ର ଲେଖକ କିଏ ବୋଲି ଅନ୍ୟ କେହି ଜାଣିନଥିଲେ। ଏହି ନାଟକରେ ବ୍ରିଟିଶ ସମର୍ଥକମାନଙ୍କୁ କଠୋର ସମାଲୋଚନା କରାଯାଇଥିଲା। କିନ୍ତୁ ମହତାବଙ୍କୁ ରାମଚନ୍ଦ୍ରଙ୍କ ଭୂମିକାରେ ଅବତୀର୍ଣ୍ଣ କରାଯାଇଥିଲା।

ତପ୍ରରେ ଘଟଣାର ପ୍ରବାହ ଭିନ୍ନ ମୋଡ଼ ନେଲା। ୧୯୩୦ରେ ଲବଣ ସତ୍ୟାଗ୍ରହ ହୁଏ। ଏହି ଆନ୍ଦୋଳନ ଫଳରେ ଲକ୍ଷ୍ମୀକାନ୍ତଙ୍କ ପିତା ଭାଗବତ ପ୍ରସାଦ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାରୁ ଇସ୍ତଫା ଦେଇ କଂଗ୍ରେସରେ ଯୋଗ ଦେଲେ। ଫଳରେ ମହତାବଙ୍କ ପରିବାର ଓ କାନ୍ତକବିଙ୍କ ପରିବାର ଏକ ନାଆରେ ଗୋଡ଼ ଦେଲେ। ଦୁଇପରିବାରର ଏକାଧିକ ବ୍ୟକ୍ତି ସତ୍ୟାଗ୍ରହୀ ରୂପେ କାରାବରଣ କଲେ। ମହତାବ ପରିବାର ଓ କାନ୍ତକବି ପରିବାର ପରସ୍ପର ନିକଟତର ହେଲେ। ଭଦ୍ରକରେ 'ମହତାବ ଭବନ' ଓ କାନ୍ତକବିଙ୍କର 'ଭାଗବତ ଭବନ' ଉଭୟ ସେତେବେଳେ କଂଗ୍ରେସ ନେତୃବୃନ୍ଦଙ୍କର ଆଗମନ, ଆଳାପ ଆଲୋଚନାରେ ମୁଖର ହୋଇଉଠୁଥାଏ। ଲକ୍ଷ୍ମୀକାନ୍ତଙ୍କର କନିଷ୍ଠ ଭ୍ରାତା କମଳାକାନ୍ତ 'ପ୍ରଜାତନ୍ତ୍ର'ର ସମ୍ପାଦକ ହେବା ପରେ ପରେ ବନ୍ଦୀ ହୋଇଗଲେ। କଂଗ୍ରେସ ସଂଗଠନ, ସମ୍ବାଦପତ୍ର ଉପରେ ବ୍ରିଟିଶ ସରକାରଙ୍କର ଏପରି ବିଷଦୃଷ୍ଟି ପଡିଥିବାବେଳେ ଏବଂ ସମସ୍ତ ନେତା ଓ କର୍ମୀ ଜେଲ୍ ଭିତରେ ଥିବା ବେଳେ- କାନ୍ତକବି ବ୍ରିଟିଶ ବିରୋଧୀ ବୁଲେଟିନ୍ ଲେଖୁଥିଲେ ଏବଂ ତାହା ଲିଥୋ ଆକାରରେ ପ୍ରକାଶ ପାଉଥିଲା। ସେତେବେଳେ ଓରାଳି ଗ୍ରାମର ସ୍ୱର୍ଗୀୟ ଶ୍ରୀରାମ ପଟ୍ଟନାୟକ ଏହି ବୁଲେଟିନ୍ ପ୍ରକାଶନରେ ଲୁଚି ଲୁଚି ସହାୟତା କରୁଥିଲେ। କେହି ଜାଣିପାରୁ ନଥିଲେ, କଂଗ୍ରେସ ଆନ୍ଦୋଳନକୁ

ବଞ୍ଚାଇ ରଖିବାପାଇଁ ଏହି ବୁଲେଟିନ୍ କିଏ, କେମିତି, କେଉଠୁ ପ୍ରକାଶ କରିଛି। 'ପ୍ରଜାତନ୍ତ୍ର' ବନ୍ଦ ହୋଇ ଯିବାପରେ ଏ ପ୍ରକାର ବୁଲେଟିନ୍ ସାହାଯ୍ୟରେ କଂଗ୍ରେସ ଆନ୍ଦୋଳନ ଚାଲୁ ରଖିବାପାଇଁ ମହତାବଙ୍କର ଇଙ୍ଗିତ ଥିଲା।

ଯେତେବେଳେ ଗାନ୍ଧି-ଇରଉଇନ୍ ସନ୍ଧି ସ୍ୱାକ୍ଷରିତ ହେଲା-ସେତେବେଳେ ବିଲାତର ଗୋଲଟେବୁଲ ବୈଠକକୁ ମହାତ୍ମା ଗାନ୍ଧି ଗଲେ ଏବଂ ଲବଣ ଆନ୍ଦୋଳନ ମଧ୍ୟ ସ୍ଥଗିତ ରହିଲା। ସେତିକି ବେଳେ ମହତାବ ଓ ଅନେକ କଂଗ୍ରେସ କର୍ମୀ ଜେଲରୁ ମୁକ୍ତ ହେଲେ। ମହତାବଙ୍କୁ ଭଦ୍ରକର ପୁରୁଣା ବଜାରଠାରେ ସମ୍ବର୍ଦ୍ଧନା ଦିଆଗଲା। କାନ୍ତକବି ଲେଖିଥିଲେ-

'ଆର୍ଯ୍ୟବାହିନୀ ଆସିଛି ଫେରି
ବର୍ଜି ସମର କ୍ଷେତ୍ର।
ବଜାଅ ଭେରୀ, ବଜାଅ ତୂର୍ଯ୍ୟ
ଉଡ଼ାଅ, ବିଜୟ ଜୈତ୍ର....।।'

ଏବେ ସ୍ୱର୍ଗୀୟ ନନ୍ଦକିଶୋର ଦାସଙ୍କର ଆତ୍ମଜୀବନୀ 'ମୋ ଜୀବନ ଝଞ୍ଜାଳ କାହାଣୀ' ପୁସ୍ତକ ପ୍ରକାଶିତ ହେବା ପରେ ଆଉ ଗୋଟିଏ ଘଟଣା ଜଣା ପଡ଼ିଛି। ତାହା ହେଲା ୧୯୨୭ ମସିହା ପୂର୍ବର ଘଟଣା। ଉତ୍କଳମଣି ଗୋପବନ୍ଧୁ, ଉତ୍କଳ ଗୌରବ ମଧୁସୂଦନ ଭଦ୍ରକଠାରେ ଗୋଟିଏ ରାଜନୈତିକ ସମ୍ମିଳନୀରେ ଯୋଗଦେଇ ଥାଆନ୍ତି। ଏହି ସଭାରେ ମହତାବ ଓ ଲକ୍ଷ୍ମୀକାନ୍ତ ମଧ୍ୟ ଉପସ୍ଥିତ ଥିଲେ। ମହତାବ ଗୋଟିଏ ପ୍ରସ୍ତାବ ଆଗତ କରିଲେ। ଏହି ପ୍ରସ୍ତାବ ଆଗତ ହେବାବେଳେ ପ୍ରତିବାଦର ମୃଦୁ ଗୁଞ୍ଜରଣର ଆଭାସ ମିଳିଲା। ଲକ୍ଷ୍ମୀକାନ୍ତ ଉକ୍ତ ପ୍ରସ୍ତାବର ସମର୍ଥକ ଭାବେ ଭାଷଣ ଦେଲେ। ମାତ୍ର ପ୍ରକାଶ୍ୟରେ ସେହି ପ୍ରସ୍ତାବଟିକୁ ବିରୋଧ କରାଗଲା। ପ୍ରସ୍ତାବର ବିରୋଧୀମାନେ କେତେକ ବୈଧାନିକ ପ୍ରଶ୍ନ ଉଠାଇଲେ। ପ୍ରସ୍ତାବର ମର୍ମଥିଲା ଯେ ଉତ୍କଳ ସମ୍ମିଳନୀ ପୂର୍ବରୁ ଓଡ଼ିଶାରେ ୧୯୦୩ଠାରୁ ସେ ପର୍ଯ୍ୟନ୍ତ ଯେତେ 'ଉତ୍କଳ ସମ୍ମିଳନୀ' ହୋଇ ଯାଇଛି, ସେଗୁଡ଼ିକୁ ସ୍ୱୀକୃତି ଦିଆଯାଉ। ଉତ୍କଳକେଶରୀ ମହତାବ ତଥା 'ବନ୍ଦେ ଉତ୍କଳ'ର ରଚୟିତା କାନ୍ତକବିଙ୍କ ସେହି ପ୍ରସ୍ତାବ ସେ ସଭାରେ ଘୋର ଆଲୋଡ଼ନ ସୃଷ୍ଟି କରିଥିଲା। ମାତ୍ର ଉତ୍କଳମଣିଙ୍କର ଓଜସ୍ୱିନୀ ସମର୍ଥନ ଏବଂ ଭଦ୍ରକ ସମ୍ମିଳନୀର ସଭାପତି ନନ୍ଦକିଶୋର ଦାସଙ୍କର ସ୍ପଷ୍ଟ ନିଷ୍ପତ୍ତି ଫଳରେ ସେହି ପ୍ରସ୍ତାବଟି ଗୃହୀତ ହୋଇ ଯାଇଥିଲା।

୧୯୩୩ ମସିହାର କଥା । 'ଉତ୍କଳ ସାହିତ୍ୟ ସମାଜ'ର ତତ୍କାଳୀନ ସମ୍ପାଦକ ତଥା ହିନ୍ଦ୍ ସେବକ ସମାଜର ସଭ୍ୟ ୰ଲକ୍ଷ୍ମୀନାରାୟଣ ସାହୁଙ୍କ ଉଦ୍ୟମରେ କାନ୍ତକବିଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଉଥାଏ । ଅଧ୍ୟକ୍ଷତା କରୁଥାନ୍ତି କବିଶେଖର ଚିନ୍ତାମଣି ମହାନ୍ତି । ମହତାବଙ୍କର ସହପାଠୀ ଓ କବିଶେଖରଙ୍କ ପୁତ୍ର କବି ଉପେନ୍ଦ୍ର ପ୍ରସାଦ ମହାନ୍ତି ଓ ଭଦ୍ରକ ତଥା ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରୁ ଆସିଥିବା ଅଭିନନ୍ଦନପତ୍ର ପାଠ କରାଗଲା । ଭଦ୍ରକ ନାଗରିକମାନଙ୍କ ପକ୍ଷରୁ ମହତାବ ଯେଉଁ ଅଭିନନ୍ଦନ ପାଠ କରିଥିଲେ, ତହିଁର ସ୍ୱତନ୍ତ୍ର ସ୍ୱାଦ ରହିଥିଲା । ମହତାବ ପ୍ରକାଶ କରିଥିଲେ ଯେ, ବ୍ରିଟିଶ ଅଧୀନରେ ଥିବାବେଳେ ଓଡ଼ିଶାର ତରୁଣ ପ୍ରାଣ ଯାହା ଚାହୁଁଥିଲା ତାହା ତତ୍କାଳୀନ କବି କଳାକାର ଓ ଦାର୍ଶନିକମାନଙ୍କଠାରୁ ପାଉ ନଥିଲା । ତେଣୁ ସେ କହିଥିଲେ -"ସତକଥା କହିବାକୁ ଗଲେ ଆମେ ନିରାଶ ହେଉଛୁଁ । ମାତ୍ର, ଲକ୍ଷ୍ମୀବାବୁ, ଆପଣଙ୍କ ଚିନ୍ତା, ଆପଣଙ୍କ ଜାତୀୟତା, ଆପଣଙ୍କ ଲେଖା ଭଙ୍ଗୀ, ଆମ୍ଭମାନଙ୍କୁ ନିରାଶାରେ ଆଶା ଦେଉଛି । ଆପଣଙ୍କ ଯୋଗେ ଆମ୍ଭେମାନେ ଆଶା କରୁଛୁ ଯେ, ଆମକୁ ଟାଣିବା ପାଇଁ କଳ୍ପନାର ପ୍ରଖର ସ୍ରୋତ ଛୁଟାଇ ଦେବାକୁ ଅନେକ ଅଛନ୍ତି ବା ବାହାରର ଶତ ଶତ ଦେଶବାସୀଙ୍କ ସହ ମୁଁ ଆପଣଙ୍କୁ ଶ୍ରଦ୍ଧା ଓ ଭକ୍ତି କରେ । ଆପଣଙ୍କ ଜାତୀୟ ସଙ୍ଗୀତ ମୋ' ପରି ବହୁ ତରୁଣ ହୃଦୟରେ ସ୍ପନ୍ଦନ ଆଣିଦେଇଛି.... ।"

କାନ୍ତକବିଙ୍କର ପିତୃ ବିୟୋଗ ଘଟିଥିଲା ୧୯୩୬ରେ । ମହତାବଜୀ ସେତେବେଳେ ଭଦ୍ରକରେ ଥିଲେ । ସମବେଦନା ଜଣାଇବା ପାଇଁ ସେ କାନ୍ତକବିଙ୍କର ବାସଭବନକୁ ଆସିଥିଲେ । ସେଠାରେ ସେ ଦେଖନ୍ତି ସମସ୍ତେ କାନ୍ଦୁଛନ୍ତି । ସମଗ୍ର ବାସଭବନ କ୍ରନ୍ଦନରୋଳରେ ମୁଖର ହୋଇ ଉଠିଛି । କେବଳ ପରିବାର ବ୍ୟକ୍ତି ନୁହନ୍ତି ଅନ୍ୟମାନେ ମଧ୍ୟ ଅଶ୍ରୁସିକ୍ତ ନୟନରେ ସମ୍ମୀଭୂତ । ପ୍ରତ୍ୟୁତ୍ପନ୍ନମତି ମହତାବ ତତ୍‌କ୍ଷଣାତ୍ ତାଙ୍କର ବନ୍ଧୁ, ଭୂତପୂର୍ବ ଏମ୍.ଏଲ୍.ଏ ତଥା କାନ୍ତକବିଙ୍କ ମାମୁଁ ପୁଅ ଭାଇ କୀର୍ତ୍ତନ ପ୍ରେମୀ ଜଗନ୍ନାଥ ଦାସଙ୍କୁ ଡାକି ସଂକୀର୍ତ୍ତନର ବ୍ୟବସ୍ଥା କରାଇଲେ । କୀର୍ତ୍ତନ ଆରମ୍ଭ ହେଲାରୁ ସମସ୍ତେ ପ୍ରକୃତସ୍ଥ ହେଲେ ଏବଂ ପରବର୍ତ୍ତୀ କାର୍ଯ୍ୟକ୍ରମର ଆୟୋଜନ ଚାଲିଲା ।

ମହତାବ ଯେତେବେଳେ ପ୍ରଥମେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ, ସେତେବେଳେ କାନ୍ତକବି ମହତାବଙ୍କୁ ବଧେଇ ଦେଇ ଖଣ୍ଡେ ପତ୍ର ଦେଇଥିଲେ ।

ମହତାବଙ୍କର ଗୋଟିଏ ଗୁଣ ହେଉଛି, ସେ ପ୍ରାପ୍ତପତ୍ରର ଉତ୍ତର ଦିଅନ୍ତି। ଲକ୍ଷ୍ମୀକାନ୍ତ ଉତ୍ତର ପାଇଲେ। ସେ ଉତ୍ତରରେ ଅନ୍ୟକଥା ସହ ଲେଖାଥିଲା-'ମୁଁ ଆପଣଙ୍କ ରକ୍ତାକ୍ତ ପତ୍ର ପାଇଛି।' କାନ୍ତକବି ମୋତେ ପଚାରିଲେ, 'ରକ୍ତାକ୍ତ ପତ୍ର କ'ଣ ?' ମୁଁ ଉତ୍ତର ଦେଲି-ମୋର ମନେ ହେଉଛି ଆପଣ ସେ ଚିଠି ଲାଲ ସ୍ୟାହିରେ ଦେଇଥିଲେ ବୋଲି ମହତାବ ସେପରି ଲେଖିଛନ୍ତି।' ପରେ ଜଣେ ବିଶ୍ଳେଷଣକରି ତାର ମର୍ମ ଦ୍ୱିଅର୍ଥବୋଧକ ବୋଲି କହିଲେ। ସେହି ଚିଠିରେ ବିପ୍ଳବର ପଦଧ୍ୱନି ଥିଲା। ସେହି ହେତୁ ମହତାବ ଏପରି ଲେଖିପାରି ଥା'ନ୍ତି।

କାନ୍ତକବିଙ୍କର ଦେହାନ୍ତ ହୁଏ ଉଣେଇଶଶହ ତେପନ ମସିହା, ଫେବୃୟାରୀ ଚବିଶ ତାରିଖରେ। ତତ୍‌ପରବର୍ତ୍ତୀ 'ଝଙ୍କାର'ରେ ମହତାବଙ୍କର ସମ୍ପାଦକୀୟ ସ୍ମରଣଯୋଗ୍ୟ। ସଂସ୍କୃତ ସାହିତ୍ୟର କାନ୍ତକବି ଜୟଦେବ ଏବଂ ବଙ୍ଗଳା ସାହିତ୍ୟର କାନ୍ତକବି ରଜନୀକାନ୍ତଙ୍କର ପଦଲାଳିତ୍ୟ କଥା ଉଲ୍ଲେଖ ପୂର୍ବକ ସେ ଲକ୍ଷ୍ମୀକାନ୍ତଙ୍କର ସ୍ମୃତିଚାରଣ କରିଥିଲେ। ଏତଦ୍‌ବ୍ୟତୀତ ଛାତ୍ରାବସ୍ଥାରେ କାନ୍ତକବିଙ୍କ ଠାରେ କିପରି ତାରୁଣ୍ୟର ଚଳଚଞ୍ଚଳ ଭାବମୂର୍ତ୍ତି ହୋଇଥିଲା ତାହା ସେ ବର୍ଣ୍ଣନା କରିଥିଲେ। ସେ ଲେଖିଥିଲେ ଯେ, ସେତେବେଳେ ସଭା ସମିତି, ସଙ୍ଗୀତ ଆସର ସବୁଠି କାନ୍ତକବିଙ୍କର ଉପସ୍ଥିତି ଅନୁଷ୍ଠାନକୁ ରୁଚିବନ୍ତ କରୁଥିଲା।

'ଉତ୍କଳ ସମ୍ମିଳନୀ'ର ସ୍ୱେଚ୍ଛାସେବକ ବାହିନୀରେ କାନ୍ତକବିଙ୍କର ସକ୍ରିୟ ଭୂମିକା କଥା ମଧ୍ୟ ଉକ୍ତ ସମ୍ପାଦକୀୟରେ ମହତାବ ଉଲ୍ଲେଖ କରିଥିଲେ। ଡଃ ମହତାବଙ୍କ ଠାରୁ କାନ୍ତକବିଙ୍କ ସମ୍ବନ୍ଧରେ ମୋ ଶୁଣିବାରେ ଶେଷ ଭାଷଣ କଥା ଏଠାରେ ଟିକିଏ ସୂଚାଇ ଦିଏଁ। ଭଦ୍ରକ 'ସାହିତ ସଂସ୍କୃତି ପରିଷଦ' ଆନୁକୂଲ୍ୟରେ ୧୯୭୯ ମସିହା, ଛବିଶ ଫେବୃୟାରୀରେ କାନ୍ତକବିଙ୍କ ଶ୍ରାଦ୍ଧ ସଭା ଅନୁଷ୍ଠିତ ହୋଉଥାଏ। ମୁଖ୍ୟଅତିଥି ହୋଇଥିଲେ ଡଃ ମହତାବ। ଅନେକ କଥା ମଧ୍ୟରେ ତାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ମନ୍ତବ୍ୟ ଥିଲା ଯେ ଆଜି ଆମ ବିଶ୍ୱବିଦ୍ୟାଳୟମାନଙ୍କରେ ଅନେକ ସୁସାହିତ୍ୟକୁ ପାଠ୍ୟକ୍ରମରୁ ବାଦ୍ ଦିଆଯାଇଛି। କାନ୍ତକବିଙ୍କର ରଚନା ମଧ୍ୟ ବିଶ୍ୱବିଦ୍ୟାଳୟର ପାଠ୍ୟ ପୁସ୍ତକ ରୂପେ ଗ୍ରହଣ କରାଯାଇନାହିଁ। ଏକଥା ଶୁଣିବାପରେ ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟିକ କହି ପକାଇଲେ — "ଏ ଲୋକଙ୍କର କେତେ ଦିଗରୁ ଗଭୀର ଚିନ୍ତା ରହିଚି।'

ଉତ୍କଳ କେଶରୀ ଓ କାନ୍ତକବିଙ୍କର ସ୍ମୃତିଚାରଣ ଏ ଜାତିର ଭାବୀ

ସାହିତ୍ୟ ସାଧକମାନଙ୍କ ପାଇଁ ଅସରନ୍ତି ପ୍ରେରଣାର ଉତ୍ସ। ଜଣେ ତାଙ୍କର ବିପୁଳ କର୍ମବହୁଳ ତଥା ବ୍ୟସ୍ତ ଜୀବନରେ ସାହିତ୍ୟ ସାଧନାରୁ କେବେହେଲେ ବିରତ ହୋଇ ନାହାନ୍ତି। ଅନ୍ୟ ଜଣେ ଦୁରାରୋଗ୍ୟ ବ୍ୟାଧିରେ ଚିର ଜର୍ଜରିତ ହୋଇ ମଧ୍ୟ ତାଙ୍କର ସାରସ୍ୱତ ଆରାଧନା ଅବ୍ୟାହତ ରଖି ପାରିଥିଲେ। ଦୁହିଁଙ୍କର ସାହିତ୍ୟ ସୃଷ୍ଟି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ କେବଳ ଅବିସ୍ମରଣୀୟ ଓ ଅନବଦ୍ୟ ନୁହେଁ-ଏକ ବିରାଟ ବିସ୍ମୟ ମଧ୍ୟ।

କାନ୍ତକୁଟୀର,
ଭଦ୍ରକ

